# ଇତିହାସ ଓ କିମ୍ବଦନ୍ତୀ




ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ

# ଇତିହାସ ଓ କିମ୍ବଦନ୍ତୀ

ଲେଖକ—
ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ଏମ୍ ଏ, ଡି.ଫିଲ୍

—✲—

ପ୍ରକାଶକ—
ଉତ୍କଳ ବିଶ୍ୱ ବିଦ୍ୟାଳୟ
ବାଣୀବିହାର, ଭୁବନେଶ୍ୱର

Dr. P. Parija, O. B. E., M. A. (Cantab)
B. Sc., I. E. S. (Retd.), F. N. I.

VICE-CHANCELLOR

Gram : UTKALVARSITY
Phone : OFFICE-549

UTKAL UNIVERSITY
VANI VIHAR
BHUBANESWAR

December, 8, 1962

I am glad that Dr. K. C. Panigrahi's book "Kimvadanti O' Itihasa" has been published after some unavoidable delay. Dr. Panigrahi was given financial aid by the Jnan Vijnan Parishad, an organisation under this University, to promote research and advancement and dissemination of knowledge. Dr. Panigrahi has made the best use of the aid and has produced a book which, in the opinion of experts, is a very useful work for the spread of historical knowledge among the public of Orissa. Dr. Panigrahi deserves congratulation for this useful work.

P. Parija

VICE-CHANCELLOR

8/12

# ଉପକ୍ରମଣିକା

କିମ୍ବଦନ୍ତୀ ଇତିହାସ ନହେ; କିନ୍ତୁ କିମ୍ବଦନ୍ତୀ ମଧ୍ୟରେ ଐତିହାସିକ ତଥ୍ୟ ଲୁକକ୍କାୟିତ ହୋଇ ରହିଥାଏ ଓ ତାହା ଅନ୍ୟାନ୍ୟ ଉପାଦାନଦ୍ୱାରା ସମର୍ଥିତ ହେବା ପରେ ଇତିହାସରେ ପରିଣତ ହୁଏ । କିମ୍ବଦନ୍ତୀରେ ଅସ୍ପଷ୍ଟତା, ଅତିରଞ୍ଜନ, ଅତିମାନୁଷିକତା, ପରସ୍ପର ବିରୋଧୀମତ ଓ ସମସାମୟିକ ଲେଖରୁ ପ୍ରାପ୍ତ ଇତିହାସ ସହିତ ତାର ଅମେଳ ଇତ୍ୟାଦି ରହିବା ଅତ୍ୟନ୍ତ ସ୍ୱାଭାବିକ । ଅତୀତ ଘଟନାମାନଙ୍କ ଅସ୍ପଷ୍ଟ ସ୍ମୃତିରୁ ଓ ପ୍ରକୃତ ଘଟନାମାନଙ୍କୁ ବିକୃତ, ଅତିରଞ୍ଜିତ ଓ ଗଳ୍ପାକାରରେ ବ୍ୟାଖ୍ୟାନ କରିବାର ଜନସାଧାରଣଙ୍କ ସହଜାତ ପ୍ରବୃତ୍ତିରୁ କିମ୍ବଦନ୍ତୀମାନ ସମ୍ଭୂତ ହୋଇଥାନ୍ତି । ଏଣୁ ସମସ୍ତ କିମ୍ବଦନ୍ତୀରେ ପ୍ରାୟ ଏକ ପ୍ରକାର ଭ୍ରମ ଓ ତ୍ରୁଟି ଦେଖାଯାଏ । ତଥାପି କିମ୍ବଦନ୍ତୀକୁ ଇତିହାସର ଗୋଟିଏ ଅପରିହାର୍ଯ୍ୟ ଉପାଦାନ ବୋଲି ସମସ୍ତ ଐତିହାସିକ ସ୍ୱୀକାର କରିଛନ୍ତି । ତାମ୍ର ଶିଳାଲେଖ ଇତ୍ୟାଦିରୁ ଯେଉଁ ସବୁ ଐତିହାସିକ ତଥ୍ୟ ମିଳେ, ତାହା ପୂର୍ଣ୍ଣାଙ୍ଗ ଇତିହାସ ଲେଖିବାପାଇଁ ପର୍ଯ୍ୟାପ୍ତ ନୁହେ । ଏଣୁ କିମ୍ବଦନ୍ତୀକୁ ପରିପୂରକ ଉପାଦାନରୂପେ ଗ୍ରହଣ କରି ସେଥିରୁ ଇତିହାସ ବାହାର କରିବାର ଚେଷ୍ଟା ସମସ୍ତ ଐତିହାସିକ କରିଥାନ୍ତି ।

ଆମ ଦେଶରେ ପ୍ରତ୍ନତତ୍ତ୍ୱ ସମ୍ପଦ ଯେପରି ପ୍ରଚୁର, କିମ୍ବଦନ୍ତୀ ମଧ୍ୟ ସେହିପରି ପ୍ରଚୁର । ଓଡ଼ିଶାର ସଂସ୍କୃତ ଓ ଭାଷା ସାହିତ୍ୟରେ ପ୍ରଚୁର ଐତିହାସିକ କିମ୍ବଦନ୍ତୀ ରହିଛି ଓ ସେ ଗୁଡ଼ିକୁ ଯଥାଯଥ ଭାବରେ ଆଲୋଚନା କଲେ ସେଥିରୁ ବହୁ ଐତିହାସିକ ତଥ୍ୟ ସଂଗୃହୀତ ହେବାର ସମ୍ଭାବନା ରହିଛି । ବୈଦେଶିକ

ପଣ୍ଡିତମାନେ ଓଡ଼ିଶାର ଇତିହାସକୁ ବହୁଭାବରେ ସମୃଦ୍ଧ କରିଛନ୍ତି, କିନ୍ତୁ ଆମ ଦେଶର ଭାଷା ଓ ସାହିତ୍ୟରେ ସେମାନଙ୍କ ପ୍ରବେଶ ନ ଥିବାରୁ କିମ୍ବଦନ୍ତୀକୁ ଇତିହାସ ସଙ୍କଳନରେ ନିଯୋଜିତ କରିବାର ସୁବିଧା ସେମାନଙ୍କ ମଧ୍ୟରୁ ସମସ୍ତେ ପାଇନାହାନ୍ତି । ଏଣୁ ଓଡ଼ିଶାର କିମ୍ବଦନ୍ତୀମାନ କେବଳ ଓଡ଼ିଶାବାସିମାନଙ୍କ ଦ୍ୱାରାହିଁ ଯଥାଯଥ ଭାବରେ ଆଲୋଚିତ ହୋଇ ପାରିବ । ଏହି ବିଶ୍ୱାସର ବଶବର୍ତ୍ତୀ ହୋଇ ଲେଖକ ଏହି ପୁସ୍ତକ ଲେଖିବାରେ ପ୍ରୟାସୀ ହୋଇଛନ୍ତି ।

କିମ୍ବଦନ୍ତୀମାନଙ୍କୁ ଅନ୍ୟାନ୍ୟ ଉପାଦାନଦ୍ୱାରା ପରୀକ୍ଷା କରି ନେବାପାଇଁ ଏଠାରେ ଯଥାସମ୍ଭବ ଚେଷ୍ଟା କରା ହୋଇଛି । ତାମ୍ର ଶିଳାଲେଖ ଇତ୍ୟାଦିରେ ଯାହା ଅଛି ଓ କିମ୍ବଦନ୍ତୀମାନଙ୍କରେ ଯାହା ଅଛି, ତାହା ସହଜ ଓ ସରଳଭାବରେ ପ୍ରକାଶ କରାଯାଇଛି । ଲେଖକ ଜ୍ଞାତସାରରେ କୌଣସି ବିଷୟକୁ ଅସତ୍ୟ ବା ଅତି-ରଞ୍ଜିତ ଭାବରେ ପ୍ରକାଶ କରିବାପାଇଁ ଚେଷ୍ଟା କରି ନାହିଁ ; କିମ୍ବା କୌଣସି ଐତିହାସିକଙ୍କ ମତ ଉପରେ କୌଣସି ଯୁକ୍ତିର ମୂଳଭିତ୍ତି ସଂସ୍ଥାପନ କରିନାହିଁ, କିମ୍ବା କୌଣସି ବ୍ୟକ୍ତିକୁ ସମାଲୋଚନା ମଧ୍ୟ କରି ନାହିଁ । ମୌଳିକ ଉପାଦାନହିଁ ଇତିହାସର ମୂଳଧନ, ଏଣୁ ତାହାର ଉପରେହିଁ ସମସ୍ତ ଆଲୋଚନା କେନ୍ଦ୍ରୀଭୂତ କରାଯାଇଛି । ତଥାପି ଏହାର ତ୍ରୁଟି ବିଚ୍ୟୁତି ଯଦି କେହି ଲେଖକର ଦୃଷ୍ଟିକୁ ଆଣନ୍ତି, ତାହାହେଲେ ସେ ସେଗୁଡ଼ିକୁ ସଂଶୋଧନ କରିବାକୁ ସର୍ବଥା ପ୍ରସ୍ତୁତ ହେବ ।

ଗବେଷଣା ପୁସ୍ତକ ବା ପ୍ରବନ୍ଧମାନଙ୍କରେ ସାଧାରଣତଃ ପ୍ରକାଶିତ ପୁସ୍ତକ ଓ ମୌଳିକ ଉପାଦାନମାନଙ୍କର ସୂଚନା

ଫୁଟ୍‌ନୋଟ୍ ଆକାରରେ ଦିଆ ହୋଇଥାଏ । କିନ୍ତୁ କେତେକ
କାରଣ ବଶତଃ ଏ ପୁସ୍ତକର ସମ୍ବନ୍ଧ ସେପରି ସୂଚନା ଦିଆଯାଇ
ନାହିଁ । ଅନେକ ଗୁଡ଼ିଏ ସଂସ୍କୃତ ଓ ଇଂରାଜୀ ଫୁଟନୋଟରେ
କୌଣସି ଓଡ଼ିଆ ପୁସ୍ତକ ବା ପ୍ରବନ୍ଧ ସ୍ୱସକ୍ରାନ୍ତ ହେଲେଁ, ତାହା
ଜନ ସାଧାରଣଙ୍କ ଦୁର୍ବୋଧ୍ୟ ହୋଇଥାଏ । ଏ ପୁସ୍ତକଟି ଓଡ଼ିଶାର
ଜନସାଧାରଣଙ୍କ ପାଇଁ ଉଦ୍ଦିଷ୍ଟ ; କାରଣ ଏହାର ମୂଳଭିତ୍ତି
ହେଉଛି ଓଡ଼ିଶାର କିମ୍ବଦନ୍ତୀ ଓ ଏହି କିମ୍ବଦନ୍ତୀରେ କେବଳ
ଓଡ଼ିଶାବାସିମାନଙ୍କରହିଁ ପ୍ରବେଶ ଅଛି । ଏହି କାରଣରୁ ମଧ୍ୟ
ପୁସ୍ତକଟିକୁ ଇଂରାଜୀରେ ଲେଖିବାପାଇଁ ଚେଷ୍ଟା କରାଯାଇନାହିଁ ।
ଯେଉଁ ପୁସ୍ତକର ମୂଳଭିତ୍ତି ହେଉଛି ଓଡ଼ିଶାରେ ପ୍ରଚଳିତ ଓ
ଓଡ଼ିଆ ଭାଷାରେ ଲିଖିତ କିମ୍ବଦନ୍ତୀ, ତାର ସତ୍ୟାସତ୍ୟ ବିଚାର
କେବଳ ଓଡ଼ିଶାବାସିମାନେହିଁ କରିପାରିବେ; ଓଡ଼ିଆ ଅନଭିଜ୍ଞ
ବୈଦେଶିକ ପଣ୍ଡିତମାନେ ଏହି ବିଚାର କରିପାରିବେ ନାହିଁ ।
ଏହି ପୁସ୍ତକଟି ଉତ୍କଳବିଶ୍ୱବିଦ୍ୟାଳୟର ଜ୍ଞାନ-ବିଜ୍ଞାନ ସମିତିର
ଆନୁକୂଲ୍ୟରେ ଲିଖିତ ହୋଇଥିବାରୁ ଲେଖକ ଏହି ସମିତି
ନିକଟରେ କୃତଜ୍ଞ ରହିଛନ୍ତି । ଲିଖିତ ବିଷୟମାନଙ୍କ ମଧ୍ୟରୁ
କୌଣସିଟିକୁ ଅସତ୍ୟ ବା ଅତିରଞ୍ଜିତ ବୋଲି କେହି ସନ୍ଦେହ
କଲେ ଏହି ସମିତି ଜରିଆରେ ତାର ବିଶଦ୍ ବିବରଣ ପ୍ରକାଶ
କରିବାପାଇଁ ଲେଖକ ବାଧ୍ୟ ହେବ ।

ପୁସ୍ତକଟି ପ୍ରଥମାର୍ଦ୍ଧ ଓ ଦ୍ୱିତୀୟାର୍ଦ୍ଧରେ ବିଭକ୍ତ ।
ପ୍ରଥମାର୍ଦ୍ଧରେ ପଞ୍ଚକଟକର ଇତିହାସ ଆଲୋଚନା କରାଯାଇଛି ଓ
ଦ୍ୱିତୀୟାର୍ଦ୍ଧରେ ମାଦଳାପାଞ୍ଜିର କେତେକ ବିଷୟ ଆଲୋଚନା
କରାଯାଇଛି । ପୁସ୍ତକରେ ସନ୍ନିବେଶିତ ବିଷୟମାନଙ୍କ ମଧ୍ୟରୁ

କେତେକ ପ୍ରବନ୍ଧାକାରରେ ବିଭିନ୍ନ ପତ୍ରିକାରେ ପ୍ରକାଶିତ ହୋଇଥିଲା । ସେ ସମସ୍ତଙ୍କୁ କେତେବେଳେ ପରିବର୍ତ୍ତିତ, କେତେବେଳେ ପରିମାର୍ଜିତ ଓ କେତେବେଳେ ସଂକ୍ଷିପ୍ତ କରିବାକୁ ପଡ଼ିଛି ।

*ପାଟନା* — *ଗ୍ରନ୍ଥକାର*

*୨୯/୯/୫୪*

# ସୂଚୀପତ୍ର

# କିମ୍ବଦନ୍ତୀ ଓ ଇତିହାସ

## ଯାଜପୁର କଟକ

### ( ଅଭିନବ ଯଯାତିନଗର )

ଉତ୍କଳର ପଞ୍ଚ ମହାକ୍ଷେତ୍ର ମଧ୍ୟରେ ବିରଜାକ୍ଷେତ୍ର ଗୋଟିଏ ପ୍ରଧାନ କ୍ଷେତ୍ର ଓ ଉତ୍କଳର ପଞ୍ଚକଟକ ମଧ୍ୟରେ ଯାଜପୁର ଗୋଟିଏ ପ୍ରଧାନ କଟକ । କିନ୍ତୁ ଜଗନ୍ନାଥକ୍ଷେତ୍ର ପୁରୀ, ସୌରକ୍ଷେତ୍ର କୋଣାର୍କ ଓ ଶୈବକ୍ଷେତ୍ର ଭୁବନେଶ୍ୱରର ଇତିହାସ ଉପରେ ଐତିହାସିକମାନେ କେତେକାଂଶରେ ଆଲୋକପାତ କରିଥିଲେହେଁ ବିରଜାକ୍ଷେତ୍ର ସମ୍ବନ୍ଧରେ ଇତିହାସ ଏକାବେଳକେ ନୀରବ କହିଲେ ଚଳେ । ଅନ୍ୟାନ୍ୟ କ୍ଷେତ୍ରରେ ବର୍ତ୍ତମାନ ଯେଉଁ ସବୁ ମନ୍ଦିର ଅଛି, ସେ ସବୁ ଅତି ପ୍ରାଚୀନ, କିନ୍ତୁ ବିରଜା ଦେବୀଙ୍କ ବର୍ତ୍ତମାନ ମନ୍ଦିର ଏକ ଶତ ବର୍ଷ ମଧ୍ୟରେ ଯାଜପୁରର ଜଣେ ଜମିଦାର ଚୌଧୁରୀ ସୁଦର୍ଶନ ମହାପାତ୍ରଙ୍କ ଦ୍ୱାରା ନିର୍ମିତ ହୋଇଅଛି । ଏଣୁ ଏହା ଅତି ପ୍ରାଚୀନ ନୁହେ । ପୁରୀ ଓ ଭୁବନେଶ୍ୱରର କେତେକ କୀର୍ତ୍ତି ଧର୍ମାନ୍ଧମାନଙ୍କ ଦ୍ୱାରା ନଷ୍ଟ ହୋଇଥିଲେ ମଧ୍ୟ ବର୍ତ୍ତମାନ ସୁଦ୍ଧା ସେଠାରେ ଯେଉଁ ବହୁ ମୂର୍ତ୍ତି ଓ ମନ୍ଦିର ବିଦ୍ୟମାନ ଅଛି, ସେମାନେ କ୍ଷେତ୍ରଗୁଡ଼ିକ ସମ୍ବନ୍ଧରେ ଯଥେଷ୍ଟ ଐତିହାସିକ ଉପାଦାନ ଯୋଗାଇଥାନ୍ତି । କିନ୍ତୁ ବିରଜାକ୍ଷେତ୍ରରେ ଧର୍ମାନ୍ଧମାନଙ୍କର ଧ୍ୱଂସଲୀଳା ସବୁଠାରୁ

ବେଶୀ ଭାବରେ ଲୁଣ୍ଠିତ ଥିଲା । ତାହାର ଫଳରେ ଅଧିକାଂଶ ପ୍ରାଚୀନ ମନ୍ଦିର ଧ୍ୱଂସ ପାଇଛି । ତ୍ରିଲୋଚନେଶ୍ୱର, ସିଦ୍ଧେଶ୍ୱର ଓ ଅପେକ୍ଷାକୃତ ଅଳ୍ପ ପ୍ରାଚୀନ ବରାହମନ୍ଦିରକୁ ବାଦ୍ ଦେଲେ ବିରଜାକ୍ଷେତ୍ରରେ ଅନ୍ୟ ପ୍ରାଚୀନ ମନ୍ଦିର ନାହିଁ କହିଲେ ଚଳେ ।

କିନ୍ତୁ ସମଗ୍ର କ୍ଷେତ୍ରଟିର ଅଡ଼ଧାର୍ଦ୍ଧ ଅନ୍ତତଃ ଦଶ ମାଇଲ ବୁଲି ଦେଖିଲେ ଜଣାଯାଏ ଯେ ଜାଜପୁରକ୍ଷେତ୍ରର ପ୍ରାଚୀନ ମନ୍ଦିରମାନ ଭୁବନେଶ୍ୱରର ମନ୍ଦିରମାନଙ୍କ ଠାରୁ ସଂଖ୍ୟା ଓ ସୌନ୍ଦର୍ଯ୍ୟରେ କୌଣସିମତେ ନ୍ୟୁନ ନଥିଲେ । ଜାଜପୁରର ପ୍ରାଚୀନ ମନ୍ଦିରଗୁଡ଼ିକ ଧ୍ୱଂସ ପାଇଛି ଓ ସେମାନଙ୍କ ପୀଠ ସ୍ଥାନରେ ବର୍ତ୍ତମାନ କୁରୁଚିବିକୃତ କ୍ଷୁଦ୍ର ମନ୍ଦିରମାନ ଆଧୁନିକ ଦାରିଦ୍ର୍ୟ ଓ ରୁଚିର ଚିହ୍ନ ବହନ କରି ମୁଣ୍ଡ ଟେକି ଉଠିଛନ୍ତି । ଏହି ମନ୍ଦିରମାନଙ୍କ ଭିତରେ ଓ ଦେହରେ ପ୍ରାଚୀନ ମନ୍ଦିରମାନଙ୍କ ଅଂଶ ବିଶେଷ ଓ ମୂର୍ତ୍ତି ବିଶେଷ ଅଦ୍ୟାପି ଦେଖା ଯାଏ । ତା ଛଡ଼ା ବିରଜା ଦେବୀଙ୍କ ମନ୍ଦିର ଓ ବେଢ଼ାରେ, ପ୍ରାଚୀନ ପୁଷ୍କରିଣୀର ସୋପାନମାନଙ୍କରେ, ପ୍ରାଚୀନ ପୋଲଦେହରେ, ଦଶାଶ୍ୱମେଧ ଘାଟରେ, ଏସ୍. ଡି. ଓ. ଙ୍କ ବାସଭବନର ବେଢ଼ା ମଧ୍ୟରେ ଓ ସ୍ଥାନେ ସ୍ଥାନେ ପୂଜିତ ଓ ଅପୂଜିତ ଦେବଦେବୀ ସ୍ତୂପ ମଧ୍ୟରେ ପ୍ରାଚୀନ ମନ୍ଦିରମାନଙ୍କ ବହୁ ଉପାଦାନ ଦେଖିବାକୁ ମିଳେ । ଭୁବନେଶ୍ୱର ପ୍ରାଚୀନ ମନ୍ଦିରମାନଙ୍କ ସହିତ ଏହି ଉପାଦାନମାନଙ୍କ ତୁଳନାତ୍ମକ ଅନୁଶୀଳନ କଲେ ଏମାନଙ୍କ ନିର୍ମାଣକାଳ ଜଣାପଡ଼େ । ଉଭୟ କ୍ଷେତ୍ରର ସ୍ଥାପତ୍ୟର ତୁଳନାତ୍ମକ ଅନୁଶୀଳନ କଲାବେଳେ ଦେଖାଯାଏ ଯେ ଅନେକ ସ୍ଥଳରେ ଉଭୟସ୍ଥାନର ମୂର୍ତ୍ତି ଓ ମନ୍ଦିରମାନଙ୍କୁ ଏକ ଅଖଡ଼ାର ଶିଳ୍ପୀମାନେ ତିଆରି କରିଥିଲେ । ଏମାନଙ୍କ ମଧ୍ୟରେ ଶୈଳୀ ସାମଞ୍ଜସ୍ୟ ନୁହେଁ, ମଣ୍ଡନ କଳାର କ୍ଷୁଦ୍ରାଦପି

କ୍ଷୁଦ୍ର ଅଂଶ ବିଶେଷରେ ମଧ୍ୟ ଆକାର ପ୍ରକାର ଓ ମାପଯୋଖର ସୂକ୍ଷ୍ମ ମେଳ ଥିବାର ଦେଖାଯାଏ । ଭୁବନେଶ୍ୱର ପ୍ରାଚୀନମନ୍ଦିରମାନଙ୍କ ନିର୍ମାଣକାଳ ଅନେକାଂଶରେ ଜଣା ପଡ଼ିଛି । ଏଣୁ ଜାଜପୁରର ମନ୍ଦିରମାନଙ୍କ ନିର୍ମାଣକାଳ ମଧ୍ୟ ଅନୁଶୀଳନଦ୍ୱାରା ଅନେକାଂଶରେ ଜଣାପଡ଼େ ।

ବିରଜାକ୍ଷେତ୍ରର ଇତିହାସ ନାହିଁ, କିନ୍ତୁ କିମ୍ବଦନ୍ତୀ ରହିଛି । ବିରଜାମାହାତ୍ମ୍ୟ ନାମରେ ଜାଜପୁରକ୍ଷେତ୍ରର କିମ୍ବଦନ୍ତୀ ସମଷ୍ଟି ବ୍ରହ୍ମାଣ୍ଡପୁରାଣରେ ସ୍ଥାନ ପାଇଛି ଓ ତା'ର ଓଡ଼ିଆ ଅନୁବାଦ ମଧ୍ୟ ହୋଇଯାଇଛି । ଏହା ଛଡ଼ା ଜାଜପୁର ଓ ତାର ଆଖପାଖରେ ବହୁ ପ୍ରକାଶିତ ଓ ଅପ୍ରକାଶିତ ପ୍ରାଚୀନ ଲେଖ ଅଛି । ଏ ସମସ୍ତ ଉପାଦାନ ଉପରେ ନିର୍ଭର କଲେ ବିରଜାକ୍ଷେତ୍ରର ଅସ୍ପଷ୍ଟ ଇତିହାସ ସମ୍ବନ୍ଧରେ ମୋଟା ମୋଟି କେତେକ କଥା ଜଣାପଡ଼େ ।

ବିରଜାକ୍ଷେତ୍ର ମାହାତ୍ମ୍ୟରେ ବର୍ଣ୍ଣିତ ଅଛି ଯେ ଗୟାସୁର ନାମରେ ଜଣେ ଅସୁର ଥିଲା । ସେ ଏତେ ବେଶୀ ଦାନଶୀଳ, ଧାର୍ମିକ ଓ ଅହିଂସ ଥିଲା ଯେ ଦେବତାମାନେ ତାକୁ ଭୟ କଲେ ଓ ତାର ବିନାଶ ପାଇଁ ବିଷ୍ଣୁଙ୍କର ଶରଣ ନେଲେ । ବିଷ୍ଣୁ ଅହିଂସ ଗୟାସୁରକୁ ଯୁଦ୍ଧରେ ନ ମାରି କୌଶଳରେ ମାରିଲେ । ଗୟାସୁରକୁ ସତ୍ୟ କରାଇ ତାର ଦେହଟାକୁ ଦାନ ସ୍ୱରୂପ ମାଗିନେଲେ ଓ ତାକୁ ତିନିଖଣ୍ଡ କରି ତାର ମୁଣ୍ଡକୁ ଗୟାରେ, ନାଭିଅଂଶକୁ ଜାଜପୁରରେ ଓ ପାଦ ଅଂଶକୁ ମହେନ୍ଦ୍ର ପର୍ବତରେ ପକାଇ ଦେଲେ । ଏହି ତିନି ସ୍ଥାନରେ ତିନୋଟି ତୀର୍ଥ ହେଲା । ଗୟାରେ ଗଦାଧରଙ୍କର ଅର୍ଥାତ୍ ବିଷ୍ଣୁଙ୍କର, ଜାଜପୁରରେ ବିରଜାଙ୍କର

ଅର୍ଥାତ୍ ଶଙ୍କରଙ୍କର ଓ ମହେନ୍ଦ୍ର ପର୍ବତରେ ଗୋକର୍ଣ୍ଣେଶ୍ୱରଙ୍କର ଅର୍ଥାତ୍ ଶିବଙ୍କର କ୍ଷେତ୍ର ଏହିପରି ଭାବରେ ଉତ୍ପନ୍ନ ହେଲା । ଏହି କମ୍ବଦନ୍ତୀ ହିରେ ବ୍ରାହ୍ମଣ୍ୟ ଧର୍ମର ପୁନରୁତ୍ଥାନର ଗୋଟିଏ ପ୍ରଚ୍ଛନ୍ନ ଇତିହାସ ଅଛି ବୋଲି ମନେ ହୁଏ । ବ୍ରାହ୍ମଣମାନେ ଅହିଂସ ବୌଦ୍ଧମାନଙ୍କ ସହିତ ଯୁଦ୍ଧ କରି ବୈଦିକ ଧର୍ମର ପୁନଃ ସଂସ୍ଥାପନ କରିଥିଲେ । ଅନେକ ସ୍ଥଳରେ ବୌଦ୍ଧମାନଙ୍କୁ ଯୁଦ୍ଧରେ ପରାସ୍ତ କରି ଓ ସେମାନଙ୍କ ତୀର୍ଥସ୍ଥାନଗୁଡ଼ିକୁ କଳକୌଶଳରେ ଅଧିକାର କରି ସେମାନେ ଏହି ଧର୍ମର ପୁନଃ ପ୍ରତିଷ୍ଠା କରିଥିଲେ । କହିବା ବାହୁଲ୍ୟ ଯେ ଗୟା ବୌଦ୍ଧମାନଙ୍କ ପ୍ରଧାନ ଧର୍ମକ୍ଷେତ୍ର ଥିଲା । ଏହିଠାରେହିଁ ଶାକ୍ୟସିଂହ ବୁଦ୍ଧତ୍ୱ ଲାଭ କରିଥିଲେ । ବର୍ତ୍ତମାନ ସୁଦ୍ଧା ଏଠାରେ ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀର ସ୍ତୂପ ଓ ଖ୍ରୀଷ୍ଟାବ୍ଦ ଚତୁର୍ଥ ଶତାବ୍ଦୀର ବୌଦ୍ଧ ମନ୍ଦିରର ଧ୍ୱଂସାବଶେଷ ଦେଖାଯାଏ । ବିରଜା-କ୍ଷେତ୍ର-ମହାତ୍ମ୍ୟରେ ଅଛିର ମଧ୍ୟ ବର୍ଣ୍ଣିତ ଅଛି ଯେ ବ୍ରହ୍ମାଙ୍କ ଯଜ୍ଞକୁଣ୍ଡରୁ ବିରଜାଙ୍କ ଆବିର୍ଭାବ ଘଟିଥିଲା । ଏଥିରୁ ଏହାହିଁ ଅନୁମିତ ହୁଏ ଯେ ବ୍ରାହ୍ମଣମାନେ ବୌଦ୍ଧ କ୍ଷେତ୍ରରେ ଯଜ୍ଞ କରି ବିରଜାଙ୍କ ମୂର୍ତ୍ତି ସ୍ଥାପନ କରିଥିଲେ ।

ବୌଦ୍ଧ କ୍ଷେତ୍ର କେବେ ଶାକ୍ତକ୍ଷେତ୍ରରେ ପରିଣତ ହେଲା, ବିରଜାଙ୍କ ମୂର୍ତ୍ତି, ଅନ୍ୟାନ୍ୟ ଶିଳ୍ପକଳା ଓ ଆନୁଷଙ୍ଗିକ ଘଟନାବଳୀର ଅନୁଶୀଳନଦ୍ୱାରା ତାର ଗୋଟାଏ ମୋଟା ମୋଟି ସମୟ ମଧ୍ୟ ବାହାର କରାଯାଇ ପାରେ । ବର୍ତ୍ତମାନ ବିରଜା ମନ୍ଦିରର ପ୍ରାୟ ଏକ ମାଇଲ୍ ଦୂରରେ କଳସପୁରରେ ବିରଜାଙ୍କର ଆଦି ପୀଠ ଥିଲା । ବର୍ତ୍ତମାନ ସୁଦ୍ଧା ସେହି ଆଦିପୀଠକୁ ସ୍ଥାନୀୟ ଲୋକ ଦେଖାଇ ଥାନ୍ତି । ସେଠାରେ ଗୋଟିଏ ଭଗ୍ନମନ୍ଦିର ସ୍ତୂପ

ରହିଛି । ସେଥିରୁ ଜଣାଯାଏ ଯେ ତାହା ଗୁପ୍ତରାଜତ୍ୱ କାଳର ଗୋଟିଏ ମନ୍ଦିର ଥିଲା । ଏହାର ଶିଖର ନ ଥିଲା, କିମ୍ବା ପାଦ ଦେଶରେ ପିଷ୍ଟ, ପାଦ, କୁମ୍ଭ, କଟି, ବସନ୍ତ, ଜଂଘା ଇତ୍ୟାଦି ଉପ ବିଭାଗ ନ ଥିଲା, କିମ୍ବା ଏହାର ପାଗ ବିଭାଗ ମଧ୍ୟ ନ ଥିଲା । ଯେତେଦୂର ଜଣାଯାଏ ଏହାର ଛାତ ଆଧୁନିକ ପକ୍କା ଗୃହର ଛାତ ପରି ଚତୁଷ୍କୋଣ ଓ ସମତଳ ଥିଲା । ଭାରତର ଅନ୍ୟାନ୍ୟ ସ୍ଥାନରେ ଯେଉଁ ସବୁ ଗୁପ୍ତକାଳୀନ ମନ୍ଦିର ଆବିଷ୍କୃତ ହୋଇଛି, ସେଗୁଡ଼ିକର ଛାତ ଆଧୁନିକ ପକ୍କାଗୃହର ଛାତ ପରି ।

ବିରଜାଙ୍କ ମୂର୍ତ୍ତି ମଧ୍ୟ ଏହି ଗୁପ୍ତ ରାଜତ୍ୱ କାଳରେ ଅର୍ଥାତ୍ ଚତୁର୍ଥ ପଞ୍ଚମ ଶତାବ୍ଦୀ ମଧ୍ୟରେ ନିର୍ମିତ ହୋଇଥିଲା ବୋଲି ଜଣା-ଯାଏ । ବିରଜାଙ୍କ ଧ୍ୟାନରୁ ଜଣାଯାଏ ଯେ ତାଙ୍କର ରୂପ ହେଉଛି ମହିଷମର୍ଦ୍ଦିନୀଙ୍କ ରୂପ । ଦ୍ୱିଭୁଜାଦେବୀ ଏକ ହସ୍ତରେ ମହିଷର ପୁଚ୍ଛ ଧାରଣପୂର୍ବକ ଅନ୍ୟ ହସ୍ତରେ ଶୂଳ ଦ୍ୱାରା ମହିଷରୂପୀ ଅସୁର-ବର ପ୍ରାଣ ନାଶ କରୁଛନ୍ତି । ଭାରତର ବିଭିନ୍ନ ସ୍ଥାନରେ ଯେତେ ମହିଷମର୍ଦ୍ଦିନୀ ମୂର୍ତ୍ତି ମିଳିଛି । ସେ ସବୁକୁ ଅନୁଶୀଳନ କଲେ ଜଣାଯାଏ ଯେ ମହିଷମର୍ଦ୍ଦିନୀଙ୍କ ସର୍ବପୁରାତନ ରୂପ ଥିଲା ଦ୍ୱିଭୁଜା ଓ ମହିଷାସୁରର ରୂପ ଥିଲା କେବଳ ଗୋଟିଏ ମହିଷ । ଭୂତପୂର୍ବ ନାଗୋଦ୍ ଷ୍ଟେଟ୍‌ର ଭୂମରା ନାମକ ସ୍ଥାନରେ ଷଷ୍ଠ ଶତାବ୍ଦୀର ଯେଉଁ ଗୁପ୍ତ ମନ୍ଦିର ଅଛି, ତହିଁରେ ଥିବା ମହିଷମର୍ଦ୍ଦିନୀଙ୍କ ରୂପ ଠିକ୍ ବିରଜାଙ୍କ ପରି । କିନ୍ତୁ ତଫାତ୍ ଏହି ଯେ ତାହା ଚତୁର୍ଭୁଜା । ଏହି ହେତୁରୁ ବହୁବର୍ଷପୂର୍ବେ ସ୍ୱର୍ଗୀୟ ରମାପ୍ରସାଦଚନ୍ଦ କହିଯାଇଛନ୍ତି

ଯେ ବିରଜାଙ୍କ ମୂର୍ତ୍ତି ଅନ୍ତତଃ ଚତୁର୍ଥ କିମ୍ବା ପଞ୍ଚମ ଶତାବ୍ଦୀରେ ନିର୍ମିତ ହୋଇଥିବ । (୧)

ଏହି ସମୟରେ ଅର୍ଥାତ୍ ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀବେଳକୁ ଉତ୍କଳରେ ବିଶେଷତଃ ଜାଜପୁର ମଣ୍ଡଳରେ ବୌଦ୍ଧ ଧର୍ମର ପ୍ରାଦୁର୍ଭାବ ଯେ ବେଶୀ ଥିଲା ତାହା ଅନେକ କାରଣରୁ ଅନୁମିତ ହୁଏ । ଦାଠାବଂଶ (ଦନ୍ତବଂଶ) ନାମକ ପାଲିବୌଦ୍ଧ ଗ୍ରନ୍ଥରେ ବର୍ଣ୍ଣିତ ଅଛି ଯେ ଉଜ୍ଜୟିନୀର ରାଜପୁତ୍ର ଦନ୍ତକୁମାର କଳିଙ୍ଗରାଜ ଗୁହଶିବଙ୍କର କନ୍ୟାକୁ ବିବାହ କରି ତାଙ୍କ ଠାରୁ ବୁଦ୍ଧଦେବଙ୍କ ଦାନ୍ତ ଦାନ ସୂତ୍ରରେ ପାଇଥିଲେ ଓ ତାକୁ ସିଂହଳକୁ ନେଇ ଯାଇ ଥିଲେ । ବୁଦ୍ଧଙ୍କର ଏହି ଦାନ୍ତ ସ୍ତୂପ ମଧ୍ୟରେ ରକ୍ଷିତ ହୋଇ ଗୁହଶିବଙ୍କ ପୂର୍ବପୁରୁଷ ବ୍ରହ୍ମଦତ୍ତଙ୍କ ସମୟ ଠାରୁ ପୂଜିତ ହୋଇ ଆସୁଥିଲା । ପୁରାଣମାନଙ୍କରେ ବର୍ଣ୍ଣିତ ଅଛି ଯେ ଗୁହନାମକ ରାଜା ଓ ଇନ୍ଦ୍ରବଂଶୀୟ ରାଜାମାନେ କଳିଙ୍ଗ, ମହିଷ (ମେଦିନୀପୁର) ଓ

(୧) ଗୁପ୍ତ ରାଜତ୍ୱ କାଳରେ ଅର୍ଥାତ୍ ଖ୍ରୀଷ୍ଟାବ୍ଦ ଚତୁର୍ଥ ପଞ୍ଚମ ଶତାବ୍ଦୀରେ ଯେ ବ୍ରାହ୍ମଣ୍ୟ ଧର୍ମର ପୁନରୁତ୍ଥାନ ଯୁଗ ଆରମ୍ଭ ହୋଇଥିଲା, ଏ ବିଷୟରେ ମତଦ୍ୱୈଧ ନାହିଁ । ଏ ସମୟରେ ହିନ୍ଦୁମାନଙ୍କ ମୂର୍ତ୍ତି ପୂଜା ବିଶେଷ ପ୍ରସାର ଲାଭ କରିଥିଲା, ପୁରାଣମାନ ସଙ୍କଳିତ ହୋଇଥିଲା ଓ ବୁଦ୍ଧ ଗୟା ପରି ବୌଦ୍ଧପୀଠମାନ ବ୍ରାହ୍ମଣ ଧର୍ମର ପୀଠରେ ପରିଣତ ହୋଇଥିଲା । ଏଣୁ ଏହି ସମୟରେ ଜାଜପୁରର ବୌଦ୍ଧକ୍ଷେତ୍ର ଶାକ୍ତ କ୍ଷେତ୍ରରେ ପରିଣତ ହୋଇଥିବା ଖୁବ୍ ସମ୍ଭବ ।

ମହେନ୍ଦ୍ରପର୍ବତ ଅଞ୍ଚଳକୁ ରାଜତ୍ୱ କରୁଥିଲେ (୨)* । ବୌଦ୍ଧଗ୍ରନ୍ଥ ଦଠାବଂସ ଓ ପୁରାଣ ବର୍ଣ୍ଣିତ ଗୁହଶିବ ବା ଗୁହ ଯେ ଜଣେ କପୋଳ-କଳ୍ପିତ ବ୍ୟକ୍ତି ନୁହନ୍ତି, ତାହା ଭୌମରାଜାମାନଙ୍କ "ତାମ୍ରଶାସନ-ଗୁଡ଼ିକ ଦ୍ୱାରା ପ୍ରମାଣିତ ହୁଏ । ଭୌମରାଜାମାନେ ଗୁହଦେବପାଟକ ବା ଗୁହେଶ୍ୱର ପାଟକରେ ଅବସ୍ଥାନ କରୁଥିଲାବେଳେ ବ୍ରାହ୍ମଣ ଓ ଦେବତାମାନଙ୍କୁ ଭୂମିଦାନ କରିଥିବା କଥା ସେମାନଙ୍କ ଅଧିକାଂଶ ତାମ୍ର ଶାସନରେ ଉଲ୍ଲେଖ ଅଛି । ସେମାନଙ୍କ ଜଣେ କରଦ ରାଜାଙ୍କ ତାମ୍ର ଶାସନରେ ମନ୍ଦାକିନୀ ନଦୀର ନାମ ମଧ୍ୟ ଉଲ୍ଲେଖ ରହିଛି । ଯେତେଦୂର ଜଣାଯାଏ ଏହି ଗୁହେଶ୍ୱର ପାଟକ ଆଧୁନିକ ଖଡ଼ୀପଦା ବା ଗୋହିରଟିକିରି ଅଟେ । ଟିକିରି ଅର୍ଥ ଉଚ୍ଚସ୍ଥାନ ଓ ଗୁହେଶ୍ୱରରୁ ଗୋହିର ଶବ୍ଦ ଉତ୍ପନ୍ନ ହୋଇଥିବାର ଅନୁମାନ ଅସଙ୍ଗତ ନୁହେ । ଖଡ଼ୀପଦା ଓ ଗୋହିରଟିକିରିରେ ପ୍ରାଚୀନ ଧ୍ୱଂସ-ସ୍ତୂପ ବର୍ତ୍ତମାନ ଅଛି । ଅଳ୍ପବର୍ଷ ପୂର୍ବେ ଏହିଧ୍ୱଂସସ୍ତୂପରୁ ପାଞ୍ଚୋଟି ପ୍ରକାଣ୍ଡ ବୌଦ୍ଧ ମୂର୍ତ୍ତି ଆନୀତ ହୋଇ ଓଡ଼ିଶା ସଂଗ୍ରହାଳୟରେ ରକ୍ଷିତ ହୋଇଛି । ଏଥି ମଧ୍ୟରୁ ଗୋଟିକରେ ଭୌମବଂଶୀୟ ରାଜ୍ଞୀ ଶୁଭାକର ଦେବଙ୍କ ନାମ ଲିଖିତ ଅଛି । ମନ୍ଦାକିନୀ ନଦୀ କ୍ଷୁଦ୍ର-

---

(୨) କଳିଙ୍ଗା ମହିଷାଶ୍ଚୈବ ମହେନ୍ଦ୍ରନିଳୟାଶ୍ଚ ଯେ ।
ଏତାନ୍ ଜନପଦାନ୍ ସର୍ବାନ୍ ପାଳୟିଷ୍ୟତି ବୈ ଗୁହଃ ॥
ବାୟୁ ପୁରାଣ (ବଙ୍ଗବାସୀ ସଂସ୍କରଣ), ୯୯ ଅଧ୍ୟାୟ, ୩୮୭ ।

କୌଣସି କୌଣସି ପୁରାଣରେ ଗୁହଃ ସ୍ଥାନରେ ଗୁହାଃ ରହିଛି "ଗୁହାଃ"କୁ ପଣ୍ଡିତମାନେ "ଗୁହବଂଶୀୟ ରାଜାମାନେ" ବୋଲି ଅର୍ଥ କରିଛନ୍ତି ।

ସ୍ରୋତା ହୋଇ ବର୍ତ୍ତମାନ ମଧ୍ୟ ଜାଜପୁର ଅଞ୍ଚଳରେ ପ୍ରବାହିତ। ହେଉଛି। ଖଡ଼ୀପଦା ଓ ଗୋହିରଟିକିରୀ ଜାଜପୁରର ୫।୬ ମାଇଲ ଦୂରରେ ଅବସ୍ଥିତ। ଏ ସମସ୍ତ ପ୍ରମାଣରୁ ଜଣାଯାଏ ଯେ ଗୋହିର ଟିକିରୀ ଭୌମରଜାମାନଙ୍କ ରାଜଧାନୀ (୩) ଥିଲା ଓ ସେମାନଙ୍କ ପୂର୍ବରୁ ତାହା ଗୁହଶିବଙ୍କ ରାଜଧାନୀ ଥିଲା ବା ତାଙ୍କ ନାମ ସହିତ କୌଣସିମତେ ସଶ୍ଳିଷ୍ଟ ଥିଲା।

ଏହାପର ନାନାଦିଗରୁ ଆଲୋଚନା କଲେ ଜଣାଯାଏ ଯେ ଖ୍ରୀଷ୍ଟାବ୍ଦ ଚତୁର୍ଥ-ପଞ୍ଚମ ଶତାବ୍ଦୀ ବେଳକୁ ବିରଜାଙ୍କ ମୂର୍ତ୍ତି ଓ ପୀଠ ଜାଜପୁରରେ ସ୍ଥାପିତ ହୋଇଥିଲା। ଏହା ପରେ ଉତ୍କଳରେ ଭୌମବଂଶ, ସୋମବଂଶ ବା କେଶରୀ ବଂଶ, ଗଙ୍ଗବଂଶ,

---

(୩) ଭୌମ ରଜାମାନଙ୍କ ତାମ୍ରଶାସନଗୁଡ଼ିକ ଅନୁଶୀଳନ କଲେ ଦେଖାଯାଏ ଯେ ପ୍ରଥମ ଶୁଭାକରଦେବ ଓ ଦ୍ୱିତୀୟ ଶିବକର ଦେବ ଗୁହଦେବ ପାଟକ ଜୟସ୍କନ୍ଧାବାରରୁ ତାମ୍ରଶାସନ ଦାନ କରିଥିଲେ କିନ୍ତୁ ସେମାନଙ୍କ ପରବର୍ତ୍ତୀ ତ୍ରିଭୁବନ ମହାଦେବୀ ଓ ଅନ୍ୟାନ୍ୟ ଭୌମବଂଶୀୟ ରଜା ବା ରାଣୀ ଗୁହେଶ୍ୱର ପାଟକ ଜୟସ୍କନ୍ଧାବାରରୁ ତାମ୍ରଶାସନ ଦାନ କରିଥିଲେ। ଏଣୁ ଗୁହଦେବହିଁ ଶେଷ ବେଳକୁ ଗୁହେଶ୍ୱରରେ ପରିଣତ ହୋଇଥିଲେ। 'ଏହି ଗୁହେଶ୍ୱରରୁ ଗୋହିର ଶବ୍ଦଟି ଉତ୍ପନ୍ନ ହୋଇଥିବା ଖୁବ୍ ସମ୍ଭବ। ଯେଉଁଠାରେ ରଜାମାନେ ଅବସ୍ଥାନ କରୁଥିବା ବେଳେ ତାମ୍ରଶାସନ ଦାନ କରୁଥିଲେ, ତାକୁ ଜୟସ୍କନ୍ଧାବାର କୁହାଯାଉଥିଲା। ଯେହେତୁ ସମସ୍ତ ଭୌମ ତାମ୍ରଶାସନରେ ଗୁହଦେବ ପାଟକ ବା ଗୁହେଶ୍ୱର ପାଟକକୁ ଜୟସ୍କନ୍ଧାବାର ବୋଲି କୁହା ଯାଇଛି, ଏହାକୁ ସେମାନଙ୍କ ସ୍ଥାୟୀ ବାସସ୍ଥାନ ବା ରାଜଧାନୀ ବୋଲି ଧରିବାହିଁ ସମୀଚୀନ।

ସୂର୍ଯ୍ୟବଂଶ, ଭୌମବଂଶ, ପଠାଣ, ମୋଗଲ, ମରହଟ୍ଟା ଓ ଇଂରାଜ-ମାନେ କ୍ରମାନ୍ୱୟରେ ରାଜତ୍ୱ କରିଗଲେ । ପ୍ରତ୍ୟେକଙ୍କ ରାଜତ୍ୱ-କାଳରେ ଏହି ବିରଜା କ୍ଷେତ୍ରରେ କ'ଣ ଘଟିଥିଲା, ତାର ସ୍ଥୂଳ ଇତିହାସ ଯାଜପୁର ଓ ତାର ଆଖପାଖର ପ୍ରଚୁର ପ୍ରତ୍ନତତ୍ତ୍ୱ-ସମ୍ପଦ ସାହାଯ୍ୟରେ ପୁନର୍ଗଠନ କରିବା ସମ୍ଭବ କିନ୍ତୁ ତାହା ଦୀର୍ଘ ସମୟ, ପ୍ରଚୁର ପରିଶ୍ରମ ଓ ଅର୍ଥ ସାପେକ୍ଷ ।

ଯାଜପୁରର ଅଧିକାଂଶ ପ୍ରାଚୀନ ମନ୍ଦିର ଧ୍ୱଂସ ପାଇଛି, କିନ୍ତୁ ବିରଜାକ୍ଷେତ୍ର ମହାତ୍ମ୍ୟରେ ସେମାନଙ୍କ ତାଲିକା ରହିଛି ଏବଂ ତାଲିକାରୁ ଜଣାଯାଏ ସେ ସ୍ଥାନର କେତେକ କୀର୍ତ୍ତି ଉତ୍କଳର କେତେକ ପ୍ରାଚୀନ ରାଜା ବା ରାଣୀଙ୍କ ନାମ ସହିତ ଜଡ଼ିତ ଥିଲା । ତାଲିକାରେ ଲଳିତେଶ୍ୱର, କୁସୁମେଶ୍ୱର ଓ ଦଣ୍ଡୀଶ୍ୱର ମହାଦେବଙ୍କ ନାମ ଉଲ୍ଲେଖ ରହିଛି । (୪) ଭୌମ ବଂଶୀୟ ଅଧିକାଂଶ ରାଜାଙ୍କ ନାମ ସହିତ ଲଳିତହାର, କୁସୁମହାର ଓ କ୍ଳେଶଭୟ ବିରୁଦ ତାମ୍ରଶାସନମାନଙ୍କରେ ଦେଖାଯାଏ । ଯେତେଦୂର ସମ୍ଭବ ଲଳିତେଶ୍ୱର ଓ କୁସୁମେଶ୍ୱର ମନ୍ଦିର ଭୌମରାଜାମାନଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ଦଣ୍ଡୀମହାଦେବୀ ଭୌମବଂଶୀୟ ପଞ୍ଚମଶୁଭାକର-ଦେବଙ୍କ କନ୍ୟା ଥିଲେ ଓ ସେ ମଧ୍ୟ ତାଙ୍କ ପିତାଙ୍କ ଉତ୍ତରାଧି-କାରିଣୀ ରୂପେ ଉତ୍କଳରେ ରାଜତ୍ୱ କରିଥିଲେ । ଦଣ୍ଡୀଶ୍ୱର ମହାଦେବ ଏହି ଦଣ୍ଡୀମହାଦେବୀଙ୍କ ଦ୍ୱାରା ନିର୍ମିତ ହୋଇଥିବା ଖୁବ୍ ସମ୍ଭବ । ଯଯାତୀଶ୍ୱର ନାମକ ଆଉ ଗୋଟିଏ ମହାଦେବଙ୍କ ନାମ ବିରଜାକ୍ଷେତ୍ର-

---

(୪) ଏହି ତଥ୍ୟଟି ନଗରର ଐତିହାସିକତା ସର୍ବପ୍ରଥମେ ପଣ୍ଡିତ ବିନାୟକ ମିଶ୍ର ଦେଖାଇଥିଲେ ।

ମହାତ୍ମ୍ୟର ତାଲିକାରୁ ମିଳେ । ଏହାର ସ୍ଥାପୟିତା ଉତ୍କଳ ପ୍ରସିଦ୍ଧ ଯଯାତିକେଶରୀ ହୋଇଥିବା ଅତ୍ୟନ୍ତ ସମ୍ଭବ । ଏହି ଯଯାତି ସୋମବଂଶୀୟ ବା କେଶରୀବଂଶୀୟ ୨ୟ ଯଯାତି ହୋଇଥିବେ । (୫) ଏହାଙ୍କ ଦ୍ୱାରା ଜାଜପୁରରେ ଅଭିନବ ଯଯାତିନଗର ସ୍ଥାପିତ ହୋଇଥିଲା । ଏହା ପୂର୍ବରୁ ଜାଜପୁରର ନାମ ଥିଲା ବିରଜା । କେଶରୀବଂଶ ରାଜତ୍ୱରେ ଜାଜପୁରରେ ବହୁ କୀର୍ତ୍ତି ସୃଷ୍ଟି ହେଲା, ଯଜ୍ଞ ହେଲା, ମନ୍ଦିର ସଂଖ୍ୟା ବୃଦ୍ଧି ପାଇଲା ଏବଂ ସପ୍ତମାତୃକା ଓ ଶୁଭସ୍ତମ୍ଭ ସ୍ଥାପିତ ହେଲା । ଗଙ୍ଗ-ରାଜତ୍ୱ କାଳରେ ମଧ୍ୟ ଜାଜପୁରରେ କେତେକ ମନ୍ଦିର ସୃଷ୍ଟି ହୋଇ ଥିବାର ପ୍ରମାଣ ମିଳେ । ବିରଜା ମହାତ୍ମ୍ୟ ତାଲିକାରୁ ରାଜରାଜେଶ୍ୱର ନାମକ ଗୋଟିଏ ମହାଦେବ ମନ୍ଦିର ମିଳେ । ଏହା ଗଙ୍ଗରାଜା ରାଜରାଜେଶ୍ୱରଦେବ ନିର୍ମାଣ କରିଥିବା ଅତ୍ୟନ୍ତ ସମ୍ଭବ । ମାଦଳା-ପାଞ୍ଜିର ପ୍ରମାଣରୁ ଏବଂ ସ୍ଥାପତ୍ୟ ଓ କଳାଦୃଷ୍ଟିରୁ ବିଚାରକଲେ ଜଣାଯାଏ ଯେ ବରାହ ମନ୍ଦିରକୁ ସୂର୍ଯ୍ୟବଂଶୀ ପ୍ରତାପରୁଦ୍ରଦେବ ନିର୍ମାଣ କରିଥିଲେ ।

ଏହିପରି ଆଲୋଚନା କଲେ ଦେଖାଯାଏ ଯେ ଉତ୍କଳର ସମସ୍ତ ପ୍ରସିଦ୍ଧ ରାଜବଂଶ, ଯଥା ଗୁହବଂଶ, ଭୌମବଂଶ, କେଶରୀ ବା ସୋମବଂଶ, ଗଙ୍ଗବଂଶ ଓ ସୂର୍ଯ୍ୟବଂଶ, ଏହି ବିରଜାକ୍ଷେତ୍ରରେ ସେମାନଙ୍କ କୀର୍ତ୍ତିମାନ ନିର୍ମାଣ କରିଯାଇ ଥିଲେ । କୀର୍ତ୍ତିଗୁଡିକ

---

(୫) ଏହା ଛଡ଼ା ଦଣ୍ଡୀତୀର୍ଥ ଓ ଯଯାତିତୀର୍ଥର ମଧ୍ୟ ଉଲ୍ଲେଖ ରହିଛି । ଏହି ତୀର୍ଥ ବା ପୁଷ୍କରିଣୀଗୁଡିକ ଦଣ୍ଡୀମହାଦେବୀ ଓ ଯଯାତି-କେଶରୀ ନିର୍ମାଣ କରି ଥିବାର ଅନୁମାନ ଅଯଥାର୍ଥ ନୁହେଁ ।

ଅନେକାଂଶରେ ଧ୍ୱଂସ ପାଇଛି; ତଥାପି ଯାହା ଅଛି ସେଥିରୁ ପ୍ରମାଣିତ ହୁଏ ଯେ ଏହି ରାଜବଂଶମାନଙ୍କ ଅମଳରେ ବିରଜାକ୍ଷେତ୍ରରେ କୀର୍ତ୍ତିମାନ ନିର୍ମିତ ହୋଇଥିଲା ।

ସୂର୍ଯ୍ୟବଂଶ ରାଜତ୍ୱପରେ ଜାଜପୁରର ପ୍ରାଚୀନ କୀର୍ତ୍ତି ଶେଷ ପର୍ଯ୍ୟାୟରେ ପହୁଞ୍ଚିଥିଲା । ଉତ୍କଳର ଶେଷ ସ୍ୱାଧୀନ ନୃପତି ମୁକୁନ୍ଦ-ଦେବ ଜାଜପୁର ଅଞ୍ଚଳର ଗୋହିରଟିକିରିରେ ବଙ୍ଗ ନବାବ ସୁଲେମାନଙ୍କ ସହିତ ଲଢ଼ାଇ କରି ୧୫୬୮ ଖ୍ରୀଷ୍ଟାବ୍ଦରେ ପରାସ୍ତ ଓ ନିହତ ହେଲେ । ଖ୍ରୀଷ୍ଟାବ୍ଦ ଚତୁର୍ଥ ଶତାବ୍ଦୀରୁ ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ ସମାଗତ ଗଠନମୂଳକ କାର୍ଯ୍ୟ ଚାଲିଆସିବା ପରେ ବିରଜା-କ୍ଷେତ୍ରରେ ଏହି ଠାରୁ ଗଢ଼ିବା ସମୟ ଶେଷ ହୋଇ ଭାଙ୍ଗିବା ସମୟ ଆରମ୍ଭ ହେଲା । ଜାଜପୁରରେ ଯେଉଁ ଧ୍ୱଂସ ଲୀଳା ଚାଲିଥିଲା ତାର ଅନେକ ପ୍ରମାଣ ଅଛି । ବିଶେଷତଃ ସେ ସ୍ଥାନର ଭଗ୍ନ ଜୀର୍ଣ୍ଣ କୀର୍ତ୍ତି-ରାଜି ଏହି ପ୍ରମାଣ ବେଶୀ ଭାବରେ ଯୋଗାଇଥାନ୍ତି । (୫) ବିଧର୍ମୀ

---

(୫) ବଙ୍ଗଭାଷାରେ ରଚିତ ରମାଇ ପଣ୍ଡିତଙ୍କ ଶୂନ୍ୟ ପୁରାଣ ଦ୍ରଷ୍ଟବ୍ୟ । ରମାଇ ପଣ୍ଡିତ ମୁସଲମାନ ଚଳନ୍ତି କାଳରେ ଶୂନ୍ୟପୁରାଣ ଲେଖିଥିଲେ । ଏଥିରେ ବର୍ଣ୍ଣିତ ଅଛି ଯେ ସଦ୍ଧର୍ମୀମାନଙ୍କ ଅନୁରୋଧରେ ଧର୍ମ ମହମଦ ହେଲେ, ବ୍ରହ୍ମା ହେଲେ ପଯ୍ଗମ୍ବର ଓ ଶିବ ହେଲେ ଆଦାମ । ଏମାନେ ସମସ୍ତେ ମିଳି ଜାଜପୁରରେ ପଶିଲେ ଏବଂ ମଠ ଓ ମନ୍ଦିର ସମସ୍ତ ଭାଙ୍ଗିଚାଲି ଧର ଧର ବୋଲି ଚିତ୍କାର କରିବାକୁ ଲାଗିଲେ । ଜାଜପୁରର ପ୍ରଧାନ ମସଜିଦ୍ଟି ହିନ୍ଦୁ ମନ୍ଦିରର ଉପକରଣରେ ନିର୍ମିତ ହୋଇଅଛି । ଏହା ଆଉରଙ୍ଗ-ଜେବଙ୍କ ସମୟରେ ନିର୍ମିତ ହୋଇଥିଲା । ହିନ୍ଦୁ ମୁକ୍ତିମଣ୍ଡପ ବର୍ତ୍ତମାନ ମୁସଲମାନ କବର ହୋଇଅଛି । ମନ୍ଦାକିନୀ ନଦୀର ପୋଲ (ଅଠର

ହେଲେ ମଧ୍ୟ ସୁସଭ୍ୟ ଓ ବୈଜ୍ଞାନିକ ଇଂରେଜ ଜାତି ବହୁକାଳ ଧରି କେତେକ କୀର୍ତ୍ତିର ଗବେଷଣାନ୍ୱେଷଣର ବନ୍ଦୋବସ୍ତ କରି ସେମାନଙ୍କ ଗୁଣ ଓ ସଭ୍ୟତାର ପରିଚୟ ଦେଇଯାଇଛନ୍ତି ।

ଯାଜପୁର ଖାଲି ଗୋଟିଏ କ୍ଷେତ୍ର ବା ପିଠସ୍ଥଳ ନ ଥିଲା; ଏହା ବହୁବର୍ଷ ଧରି ଗୋଟିଏ କଟକ ବା ଦୁର୍ଗରୂପେ ରହି ପ୍ରାଚୀନ ଉତ୍କଳରେ ଗୋଟିଏ ବିଶିଷ୍ଟ ସ୍ଥାନ ଅଧିକାର କରିଥିଲା । ପ୍ରଧାନ ପ୍ରାକୃତିକ ପ୍ରତିବନ୍ଧକ ବୈତରଣୀ ନଦୀକୁ ପାର ହେଲେ ଉତ୍ତର ଦିଗରୁ ଆସୁଥିବା ଶତ୍ରୁଙ୍କୁ ପ୍ରଥମେ ଯାଜପୁର ଅଞ୍ଚଳରେ ପଦାର୍ପଣ କରିବାକୁ ପଡ଼ୁଥିଲା । ଏହାର ଏହି ପ୍ରାକୃତିକ ପରିସ୍ଥିତି ହେତୁ ପ୍ରାଚୀନ ଉତ୍କଳର ଅଧିକାଂଶ ରାଜବଂଶ ଏହାକୁ ମୁଖ୍ୟ ବା ଗୌଣ ରାଜଧାନୀ ରୂପେ ବ୍ୟବହାର କରି ଆସିଥିଲେ । ଆଗରୁ କୁହାଯାଇଛି ଯେ ପୁରାଣ ଓ * ଦାଠାବଂଶରେ ବର୍ଣ୍ଣିତ ଗୁହଶିବଙ୍କ ରାଜଧାନୀ ସମ୍ଭବତଃ ଏହି ଅଞ୍ଚଳରେ ଥିଲା । ତା ପରେ ଭୌମବଂଶୀୟ ରାଜାମାନେ ଏହି ଅଞ୍ଚଳରେ ରାଜଧାନୀ ସ୍ଥାପନ କରି ବହୁ ମୂର୍ତ୍ତି ମନ୍ଦିର ଇତ୍ୟାଦି ନିର୍ମାଣ କରାଇଥିଲେ । ଏମାନଙ୍କ ଅମଳରେ ଯାଜପୁର ଅଞ୍ଚଳ ଗୋଟାଏ ପ୍ରଧାନ ତନ୍ତ୍ର ପୀଠରେ ପରିଣତ ହେଲା; କାରଣ ଭୌମମାନଙ୍କ ଆଦିପୁରୁଷମାନେ ସେମାନଙ୍କ ତାମ୍ରଲେଖମାନଙ୍କରେ ନିଜକୁ "ପରମସୌଗତ" ଓ "ପରମୋପାସକ" ବୋଲି ପରିଚୟ ଦେଇ ମହାଯାନ ପନ୍ଥୀ ବୌଦ୍ଧ ହୋଇଥିଲେ ହେଁ ସେମାନଙ୍କ ପରବର୍ତ୍ତୀ ରାଜାମାନେ ମହାଯାନର ରୂପାନ୍ତର ତନ୍ତ୍ରଯାନ ଓ ବଜ୍ରଯାନର ଭକ୍ତ ହୋଇ ପଡ଼ିଥିଲେ । ସେମାନେ ନାମତଃ

---

ନଳା) ହିନ୍ଦୁମନ୍ଦିର ଉପକରଣରେ ନିର୍ମିତ ହୋଇଛି । ଏହା ଛଡ଼ା ବହୁମୂର୍ତ୍ତି ଦେହରେ ମନ ଇଚ୍ଛା ହାତରେ ଭଗ୍ନଚିହ୍ନ ରହିଛି ।

* ଶବ୍ଦଟି ପାଲି । ଦାଠାବଂଶ = ଦନ୍ତବଂଶ = Tooth Relic

'ପରମେଶ୍ୱର" ଓ "ପରମ ବୈଷ୍ଣବ" ବୋଲି ସେମାନଙ୍କ ଲେଖମାନଙ୍କରେ ନିଜକୁ ପରିଚୟ ଦେଉଛନ୍ତି; ମାତ୍ର ସେମାନଙ୍କ ଧର୍ମର ମୂଳପିଣ୍ଡ ଥିଲା ତନ୍ତ୍ରବାଦ । ଭୌମ ରାଜତ୍ୱକାଳର ସପ୍ତମ-ଅଷ୍ଟମ ଶତାବ୍ଦୀ ଭାରତରେ ଗୋଟିଏ ଧର୍ମ-ବିପ୍ଳବର ଯୁଗ । ଏହି ସମୟରେ ମହାଯାନ, ବଜ୍ରଯାନ, ସହଜଯାନ, ତନ୍ତ୍ରଯାନ, ପାଶୁପତ-ଧର୍ମ, ଶାକ୍ତଧର୍ମ ଇତ୍ୟାଦି ନାମରେ ନାନା ଧର୍ମ ପ୍ରଚଳିତ ଥିଲେ ମଧ୍ୟ ସେମାନଙ୍କ ମଧ୍ୟରେ ସୁସ୍ପଷ୍ଟ ବ୍ୟବଧାନ ନ ଥିଲା । ଏଣୁ କେହି ନିଜକୁ "ପରମମାହେଶ୍ୱର" ବୋଲି ପରିଚୟ ଦେଇ ସୁଦ୍ଧା ଶାକ୍ତ ବା ତନ୍ତ୍ରବାଦର ପ୍ରଧାନ ଭକ୍ତ ହୋଇପାରୁ ଥିଲେ । ଭୌମରାଜତ୍ୱର ଏହି ମିଶ୍ର-ଧର୍ମର ଚିହ୍ନ ବିରଜା କ୍ଷେତ୍ରରେ ଥିବା ବହୁ ମୂର୍ତ୍ତି ଓ ସ୍ଥାପତ୍ୟ ଦ୍ୱାରରେ ସୁସ୍ପଷ୍ଟ ଭାବରେ ରହିଛି । ତାହାର ସମ୍ୟକ୍ ଆଲୋଚନା ଏଠାରେ ସମ୍ଭବପର ନୁହେ ।

ଭୌମ ରାଜତ୍ୱ ପରେ ସୋମବଂଶୀ କେଶରୀମାନେ ଏହି ଯାଜପୁରକୁହିଁ ଉତ୍କଳର ରାଜଧାନୀ ରୂପେ ଗ୍ରହଣ କରିଥିଲେ । ସେମାନଙ୍କ ତାମ୍ରଶାସନଗୁଡିକ ଆଲୋଚନା କଲେ ଜଣାଯାଏ ଯେ ସେମାନଙ୍କ ପ୍ରଥମ ରାଜଧାନୀ ଥିଲା ବିନୀତପୁର ବା ସୋନପୁରରେ ଥିବା ଅଧୁନିକ ବିନ୍କା । ଜନମେଜୟ ଓ ତାଙ୍କ ପୁତ୍ର ପ୍ରଥମ ଯଯାତି ଏହି ବିନୀତପୁରରୁ ତାମ୍ରଶାସନମାନ ଦାନ କରିଥିବାର ପ୍ରମାଣ ରହିଛି । ପରେ କିନ୍ତୁ ପ୍ରଥମ ଯଯାତି ଓ ତାଙ୍କ ପରବର୍ତ୍ତୀ ରାଜାମାନେ ଯଯାତି ନଗରରୁ ତାମ୍ରଶାସନମାନ ଦାନ କରିଥିବାର ଦେଖାଯାଏ । ଏଥିରୁ ଏହାହିଁ ପ୍ରମାଣିତ ହୁଏ ଯେ ବିନୀତପୁର ପ୍ରଥମ ଯଯାତି ଅମଳରୁ ଯଯାତି ନଗର ନାମରେ ଆଖ୍ୟାତ ହେଲା । ରାଜା-ମାନେ ଯେ ସ୍ୱନାମାନୁସାରେ ନଗର ସ୍ଥାପନ କରୁଥିଲେ, ଏହାର

ଉଦାହରଣ ବିରଳ ନୁହେ । ମାତ୍ର ଯାଜପୁରକୁ ଯେ ଅଭିନବ ଯଯାତି ନଗର ବୋଲି କୁହାଯାଉଥିଲା, ତାହା ମାଦଳାପାଞ୍ଜିର ଅନଙ୍ଗଭୀମଦେବଙ୍କ ଅମଳର ଘଟନାବଳୀରେ ଥିବା "ଅଭିନବ ଯଯାତି ନଗର ମୁଦଲେ" ଇତ୍ୟାଦିରୁ ପ୍ରମାଣିତ ହୁଏ । ତାମ୍ରଲେଖ ଓ ମାଦଳାପାଞ୍ଜିର ପ୍ରମାଣମାନଙ୍କରୁ ଏହାହିଁ ଅନୁମିତ ହୁଏ ଯେ ପ୍ରଥମ ଯଯାତି ବିନୀତପୁରକୁ ଯଯାତି ନଗର ଆଖ୍ୟା ଦେଇଥିଲେ ଓ ଦ୍ୱିତୀୟ ଯଯାତି ଜାଜପୁରକୁ ରାଜଧାନୀ କରି ତାକୁ ଅଭିନବ ଯଯାତିନଗର ଆଖ୍ୟା ଦେଇଥିଲେ । ପୁରାତନ ଯଯାତିନଗର ଠାରୁ ନୂତନ ଯଯାତି ନଗରକୁ ପୃଥକ୍ କରିବା ପାଇଁ "ଅଭିନବ" ଶବ୍ଦର ଆବଶ୍ୟକ ହୋଇଥିଲା । ଜାଜପୁରର ଗୋଟିଏ ଅଞ୍ଚଳ ବର୍ତ୍ତମାନ "ରାଜନଗର" ନାମରେ ଅଭିହିତ । ସମ୍ଭବତଃ ଏହି ଅଞ୍ଚଳରେ ସୋମବଂଶୀ-କେଶରୀମାନଙ୍କ ରାଜଧାନୀ ଥିଲା । କେବଳ ଖନନ-କାର୍ଯ୍ୟହିଁ ଏହି ଅନୁମାନକୁ ସତ୍ୟରେ ପରିଣତ କରି ପାରିବ ।

ଏହି ଅଭିନବ ଯଯାତିନଗରରେ ଯଯାତି କେଶରୀ (୨ୟ ଯଯାତି-ଚଣ୍ଡୀହର) କଅଣ କରିଥିଲେ, ତାହା କମ୍ବଦନ୍ତୀ ଆକାରରେ ଉତ୍କଳର ପୁରପଲ୍ଲିରେ ସର୍ବତ୍ର ପ୍ରଚଳିତ ରହିଛି । ଏହି କମ୍ବଦନ୍ତୀ ଅନୁସାରେ ଯଯାତି କେଶରୀ ଜାଜପୁରରେ ଯଜ୍ଞ କରିଥିଲେ ଓ କାନ୍ୟକୁବ୍ଜରୁ ଦଶ ସହସ୍ର ବ୍ରାହ୍ମଣ ଅଣାଇ ଏହି ଯଜ୍ଞକାର୍ଯ୍ୟରେ ସେମାନଙ୍କୁ ନିୟୋଜିତ କରିଥିଲେ । ଉତ୍କଳର ଅଧିକାଂଶ କୁଳୀନ ବ୍ରାହ୍ମଣ କାନ୍ୟକୁବ୍ଜରୁ ଆଗତ ଏହି ଦଶ ସହସ୍ର ବ୍ରାହ୍ମଣର ବଂଶଧର ବୋଲି ଆଜି ସୁଦ୍ଧା ଗର୍ବ କରିଥାନ୍ତି । କମ୍ବଦନ୍ତୀରେ ଏହା ମଧ୍ୟ କଥିତ ଅଛି ଯେ ଯଜ୍ଞ ପରେ ବୈତରଣୀ ନଦୀ ସୁରା ନଦୀରେ

ପରିଣତ ହେଲା । ଯେଉଁମାନେ ଜାଜପୁରରେ ରହି ସ୍ଥିତିସ୍ଥାନ କଲେ, ସେମାନେ "ଜାଜପୁରବଂଶ" ବ୍ରାହ୍ମଣ ହେଲେ ଓ ଯେଉଁମାନେ ସେଠାରୁ ଚାଲି ଆସିଲେ ସେମାନେ ଦକ୍ଷିଣବଂଶ ବ୍ରାହ୍ମଣ ହେଲେ । ଏହି କିମ୍ବଦନ୍ତୀ ଏକାବେଳକେ ଭିତ୍ତିହୀନ ହୋଇ ନ ପାରେ । ଦ୍ୱିତୀୟ ଯଯାତିଙ୍କ ପରି ପ୍ରବଳ ପ୍ରତାପୀ ରାଜା ଯଜ୍ଞ କରିଥିବା ଓ ମଧ୍ୟ ଦେଶରୁ ବ୍ରାହ୍ମଣମାନଙ୍କୁ ଡକାଇ ଆଣିଥିବା କିମ୍ବଦନ୍ତୀରେ କୌଣସି ଅସଙ୍ଗତି ନାହିଁ । ଅତଏବ କୁହାଯାଉଛି ଯେ ଭୌମ-ରାଜବଂଶ ଅମଳରେ ଜାଜପୁର ଅଞ୍ଚଳରେ ତନ୍ତ୍ରବାଦ ପ୍ରବଳ ହୋଇ ଉଠିଥିଲା । ଏଣୁ ବୈଦିକ ଧର୍ମର ପୁନରୁତ୍ଥାନ ପାଇଁ ଯଯାତି-କେଶରୀ ଅଭିନବ ଯଯାତିନଗରରେ ଯଜ୍ଞ କରିଥିଲେ ଓ ଏହି ଯଜ୍ଞକୁ ବଧିବଦ୍ଧ ଭାବରେ ସମାପନ କରିବା ପାଇଁ ମଧ୍ୟଦେଶରୁ ବୈଦିକ ବ୍ରାହ୍ମଣମାନଙ୍କୁ ଡକାଇ ଆଣି ଥିଲେ । ବୈତରଣୀ ନଦୀ ସୂତରେ ପରିଣତ ହେବାର କିମ୍ବଦନ୍ତୀର ତାତ୍ପର୍ଯ୍ୟ ଏହି ଯେ ଜାଜପୁର ଅଞ୍ଚଳର ବ୍ରାହ୍ମଣମାନେ ଶାକ୍ତ ମତରେ ମଦ୍ୟ ମାଂସ ସେବନ କରୁଥିଲେ । ଯଯାତି ବୈଦିକ ଧର୍ମର ପୁନଃ ପ୍ରବର୍ତ୍ତନ ପାଇଁ ଏଥିରେ ବାଧା ଦେଇଥିଲେ । କିନ୍ତୁ ଶତାବ୍ଦୀର ଧର୍ମକୁ ଲୋପ କରିବା ସମସ୍ତଙ୍କ ପକ୍ଷେ ସମ୍ଭବ ନୁହେଁ । ଏଣୁ ଜାଜପୁର ଅଞ୍ଚଳ ପ୍ରଧାନତଃ ତନ୍ତ୍ର ପୀଠ ହୋଇ ରହିଲା ଓ ଉତ୍କଳର ଦକ୍ଷିଣାଞ୍ଚଳରେ ବୈଦିକ-ଧର୍ମ ପୁନଃ ପ୍ରବର୍ତ୍ତିତ ହେଲା ।

ଯଯାତି କେଶରୀ ଉତ୍କଳର ଧର୍ମଜୀବନରେ ଗୋଟାଏ ମହା ପରିବର୍ତ୍ତନ ଆଣିଥିଲେ । ଏଣୁ ବହୁ ବର୍ଷ ପୂର୍ବେ ସେ ରାଜତ୍ୱ କରିଥିଲେ ମଧ୍ୟ ଉତ୍କଳର ପୁରପଲ୍ଲୀରେ ତାଙ୍କର ନାମ ଅଜା ମୁଦ୍ରା ସୁପରିଚିତ ରହିଛି । ତାଙ୍କ ପରେ ବହୁ ରାଜା ରାଜତ୍ୱ କରିଯାଇଛନ୍ତି,

କାରୁ ଯଯାତିଙ୍କ ପରେ ସେମାନେ ପୁରୀକ୍ଷେତ୍ରରେ ସୁପରିଚିତ ହୋଇ ପାରି ନାହାନ୍ତି । ଯଯାତି କେଶରୀ ଯେ ତନ୍ତ୍ରବାଦର ଉଚ୍ଛେଦ କରି ବୈଦିକ ଧର୍ମର ପୁନଃ ପ୍ରତିଷ୍ଠା କରିବା ପାଇଁ ଚେଷ୍ଟା କରିଥିଲେ, ତାହା କେବଳ କମ୍ବଦନ୍ତୀରୁ ନୁହେଁ, ସଂସ୍କୃତ ସାହିତ୍ୟରୁ ମଧ୍ୟ ପ୍ରମାଣିତ ହୁଏ । ପ୍ରତାପରୁଦ୍ର ଦେବଙ୍କ ସଭା ପଣ୍ଡିତ କବିଡିଣ୍ଡିମ ଜୀବଦେବଙ୍କ ଭକ୍ତିଭାଗବତ ମହାକାବ୍ୟରେ ବର୍ଣ୍ଣିତ ଅଛି ଯେ ଉଦ୍ୟୋତ କେଶରୀଙ୍କ ଗୁରୁ ଭବଦେବ ପୃଥିବୀ ତନ୍ତ୍ର ସାଗରରେ ନିମଜ୍ଜିତ ହେଉଥିବାବେଳେ ଯେ ତାକୁ ଉଦ୍ଧାର କରିଥିଲେ । (୬) ଏହାର ତାତ୍ପର୍ଯ୍ୟ ଏହି ଯେ ଭବଦେବ ତନ୍ତ୍ରବାଦକୁ ଲୋପ କରି ବୈଦିକ ଧର୍ମ ସଂସ୍ଥାପନ କରିବା ପାଇଁ ଉଦ୍ୟୋତକେଶରୀଙ୍କୁ ସାହାଯ୍ୟ କରିଥିଲେ । ଉଦ୍ୟୋତକେଶରୀ ଯଯାତିକେଶରୀ ( ୨ୟ ଯଯାତି )ଙ୍କ ପୁତ୍ର ଥିଲେ । ଅତଏବ ପିତା ଧର୍ମନୀତିରେ ଯେଉଁ ପରମ୍ପରା ସୃଷ୍ଟି କରିଥିଲେ ତାହା ଉଦ୍ୟୋତକେଶରୀ ତାଙ୍କ ଗୁରୁ ଭବଦେବଙ୍କ ସାହାଯ୍ୟରେ ସମ୍ପୂର୍ଣ୍ଣ କରିବା ପାଇଁ ଚେଷ୍ଟା କରିଥିବେ ।

---

(୬) ଉଦ୍ୟୋତକେଶରୀ ନୃପସ୍ୟ ଗୁରୁର୍ବଭୂବ ।
ଶ୍ରେଷ୍ଠ ପ୍ରତିଷ୍ଠ ମହିମା ଭବଦେବ ନାମା ॥
ସୋମେଶ୍ୱର ନୃପସ୍ୟ ସମର୍ଚ୍ଚନୀୟୋ ।
ବଂଶଃ ସ ତେନ କୃତନୈବ କୃତପ୍ରତେଷ୍ଠ ॥
ଯେନୋଦ୍ଧୃତେ ସକଳ ବସୁଧା ତନ୍ତ୍ରସାଗରେ ।
ମଜ୍ଜନ୍ତୀ ମହତ ମଜ୍ଜନ ସର୍ବଲୋକ ॥

J. K. H. R. S. Vol. I.

ଯେଉଁ ଅଭିନବ ଯଯାତି ନଗରରେ ଯଯାତି କେଶରୀ ଯଜ୍ଞ କରିଥିଲେ, ତାହା କାଳକ୍ରମେ ଯଜ୍ଞପୁର ବା ଯାଜପୁର ନାମରେ ଅଭିହିତ ହେଲା । ଏହି ଯାଜପୁରରୁ ଆଧୁନିକ ଜାଜପୁର ନାମଟି ସୃଷ୍ଟି ହୋଇଛି ବୋଲି କହିଲେ ଅତ୍ୟନ୍ତ ସମୀଚୀନ ହେବ ।



# ଛତିଆ କଟକ

## ଦ୍ୱିତୀୟ ଅମରାବତୀ କଟକ

ପଞ୍ଚକଟକ ପର୍ଯ୍ୟାୟରେ ଛତିଆ କଟକ ଦ୍ୱିତୀୟ ସ୍ଥାନ ପାଇଛି । ଷ୍ଟାର୍ଲିଂ ଓ ହଣ୍ଟର୍ ସାହେବ ମାଦଳା ପାଞ୍ଜିର ଯେଉଁ ପୋଥି ସବୁ ବ୍ୟବହାର କରିଥିଲେ, ସେଥିରେ ଅମରାବତୀ କଟକ ନାମଟି ଥିଲା ଓ ସେଥି ସଙ୍ଗେ ସଙ୍ଗେ ଛତିଆ ନାମଟି ବିକୃତ ହୋଇ ଛତ୍ରା ଆକାର ଧାରଣ କରିଥିଲା । ପାଞ୍ଜିର ପରବର୍ତ୍ତୀ ପୋଥି-ମାନଙ୍କରେ ଏହି କଟକଟିର ନାମ ମିଳେ ନାହିଁ, କିନ୍ତୁ ଗଙ୍ଗାମରୁ ପ୍ରାପ୍ତ ପାଞ୍ଜିରେ ଏହାକୁ "ଦୁତୀଅ (ଦ୍ୱିତୀୟ) ଅମରାବତୀ" କଟକ ବୋଲି କୁହାଯାଇଛି । ଗଙ୍ଗ ବଂଶର ସ୍ଥାପନକର୍ତ୍ତା ଚୋଡ଼ଗଙ୍ଗ ଓଡ଼ିଶା ଦଖଲ କରିବା ସଙ୍ଗେ ସଙ୍ଗେ ଯେଉଁ ପାଞ୍ଚଟି କଟକ ବା ଦୁର୍ଗ ଅଧିକାର କରିଥିଲେ, ସେଥି ମଧ୍ୟରେ ଅମରାବତୀ ଟେ ଅନ୍ୟତମ ଥିଲା, ଏ ବିଷୟରେ ମାଦଳାପାଞ୍ଜି ଓ ଗଙ୍ଗାମରୁ ପ୍ରାପ୍ତ ପାଞ୍ଜି ମଧ୍ୟରେ ମତଦ୍ୱୈଧ ନାହିଁ ।

ନେର୍ଗି ଷ୍ଟେସନ୍‌ର ପ୍ରାୟ ୨ ମାଇଲ ଦୂରରେ ଛତିଆ ଗ୍ରାମ ଅବସ୍ଥିତ । ଏହି ଓଡ଼ିଆ ନାମଟି ପ୍ରାଚୀନ ନୁହେଁ; ଛତିଆର ବରଗଛ ଓ ତତ୍ପାର୍ଶ୍ୱସ୍ଥ ଛତିଆ ମଠହିଁ ସମଗ୍ର ସ୍ଥାନଟିକୁ ଛତିଆ ନାମରେ ଅଭିହିତ କରିଛି ବୋଲି ମନେ ହୁଏ । କିନ୍ତୁ ଛତିଆମଠର ଅଳ୍ପ ଦୂରରେ ଗୋଟିଏ ପ୍ରାଚୀନ ଦୁର୍ଗର ଯେଉଁ ଭଗ୍ନାବଶେଷ ଅଛି, ତାହା ବର୍ତ୍ତମାନ ସୁଦ୍ଧା ଅମରାବତୀ ନାମରେ ଅଭିହିତ ହେଉଛି ।

ଦୁର୍ଗଟି ଗୋଟିଏ ଲଣ୍ଡା ପାହାଡ଼ର ଅଳ୍ପ ଦୂରରେ ଅବସ୍ଥିତ ଥିଲା । ଏହି ପାହାଡ଼ଟି ଦୁର୍ଗର ରକ୍ଷା ବ୍ୟବସ୍ଥାକୁ ଦୃଢ଼ କରିବା ସଙ୍ଗେ ସଙ୍ଗେ ଏହାକୁ ପ୍ରଚ୍ଛନ୍ନ ଅବସ୍ଥାରେ ରଖିବା ପାଇଁ ମଧ୍ୟ ସାହାଯ୍ୟ କରୁଥିଲା । ଦୁର୍ଗଟିର ପ୍ରାଚୀର ବର୍ତ୍ତମାନ ମୁଦ୍ଧା ସାମାନ୍ୟ ଅଂଶରେ ରହିଛି ଓ ଏଥିରୁ ଜଣାଯାଏ ଯେ ଏହାର ଆୟତନ ଖୁବ୍ ବଡ଼ ନଥିଲା । ଏହା ମଧ୍ୟରେ ଦୁଇଟି କୂପ କେତେକ ଘରଗୁଡ଼ିକର ଭଗ୍ନାବଶେଷ ଓ ସଭା ମଣ୍ଡପ ନାମକ ଗୋଟିଏ ଉଚ୍ଚ ବେଦିକା ରହିଛି ।

ବର୍ତ୍ତମାନ ପ୍ରଶ୍ନ ହେଉଛି—ଏହି ଦୁର୍ଗଟି କେବେ ନିର୍ମିତ ହୋଇଥିଲା ? ମାଦଳାପାଞ୍ଜି ଅନୁସାରେ ଗଙ୍ଗରାଜ ଏହାକୁ ଅଧିକାର କରିଥିଲେ , କିନ୍ତୁ ଚଣ୍ଡୀଚରଣ ପ୍ରାଚୀ ପାଞ୍ଜି ଅନୁସାରେ ସେ ଏହାକୁ ନିର୍ମାଣ କରିଥିଲେ । ଯଦି ସେ କାଳ ଏହାକୁ ଅଧିକାର କରିଥିଲେ ବୋଲି ଧରାଯାଏ, ତାହାହେଲେ ସ୍ୱୀକାର କରିବାକୁ ହେବ ଯେ ଏହା ତାଙ୍କ ପୂର୍ବରୁ ସୋମବଂଶୀ କେଶରୀମାନଙ୍କ ଅମଳରେ ଅବସ୍ଥିତ ଥିଲା । କିନ୍ତୁ ସେ ଏହାକୁ ନିର୍ମାଣ କରିଥିଲେ ବୋଲି ଯଦି ଧରାଯାଏ, ତାହାହେଲେ ମାନିବାକୁ ହେବ ଯେ ଗଙ୍ଗରାଜଙ୍କ ରାଜତ୍ୱକାଳରେ ଅର୍ଥାତ୍ ଦ୍ୱାଦଶ ଶତାବ୍ଦୀର ପ୍ରଥମ ବା ଦ୍ୱିତୀୟ ପାଦରେ ଏହା ନିର୍ମିତ ହୋଇଥିଲା ।

ଦୁର୍ଗଟିର ଭଗ୍ନାବଶେଷରୁ ଏହାର ନିର୍ମାଣକାଳର କୌଣସି ସୂଚନା ମିଳେ ନାହିଁ । କିନ୍ତୁ ଏହି ଭଗ୍ନ ଦୁର୍ଗ ମଧ୍ୟରେ ଯେଉଁ ଭୁକ୍ତ ଓ ଅଭୁକ୍ତ ମୂର୍ତ୍ତିମାନ ଅଛନ୍ତି, ସେମାନଙ୍କ କାରୁକଳାରୁହିଁ ଏହାର ନିର୍ମାଣ କାଳର ସୂଚନା ମିଳି ଥାଏ । ଏହା ଭିତରେ

ବର୍ତ୍ତମାନ ଗୋଟିଏ ମଠ ଅଛି ଓ ମଠାଧୀଶଙ୍କ ଅଧୀନରେ ଯେଉଁ ପୂଜିତ ଓ ଅପୂଜିତ ମୂର୍ତ୍ତିମାନ ଅଛନ୍ତି, ସେମାନଙ୍କ ମଧ୍ୟରେ ଗୋଟିଏ ନୀଳ ରଙ୍ଗ ପଥରର ଅବଲୋକିତେଶ୍ବର ମୂର୍ତ୍ତି ଅତି-ପ୍ରାଚୀନ ବୋଲି ଜଣାଯାଏ । ଏହି ମୂର୍ତ୍ତି ସ୍ୱର୍ଣ୍ଣଲଲିତାସନରେ ସମାସୀନ, ଏହାଙ୍କ ମସ୍ତକରେ ପ୍ରଭାମଣ୍ଡଳ, କର୍ଣ୍ଣରେ କୁଣ୍ଡଳ, କଣ୍ଠରେ ବ୍ୟାଘ୍ର-ନଖ-ଜଡ଼ିତ ହାର, ହସ୍ତରେ ସନାଳପଦ୍ମ ଓ ମସ୍ତକରେ ନିବଳୀ କେଶ ରହିଛି । ଭୌମଯୁଗର କଳାର ସମସ୍ତ ଚିହ୍ନ ଏହି ମୂର୍ତ୍ତି ଦେହରେ ରହିଛି । ଯେତେଦୂର ସମ୍ଭବ, ବୌଦ୍ଧ କୀର୍ତ୍ତିର ଧ୍ୱଂସାବଶେଷରେ ପରିପୂର୍ଣ୍ଣ ନିକଟସ୍ଥ କୌଣସି ପାହାଡ଼ରୁ ଏହି ମୂର୍ତ୍ତିଟି ଆନୀତ ହୋଇ ଏଠାରେ ରକ୍ଷିତ ହୋଇଛି । କଳା ମୁଗୁନି ପଥରରେ ନିର୍ମିତ ଅନ୍ୟ ପୂଜିତ ମୂର୍ତ୍ତି ଦୁଇଟି ହେଉଛନ୍ତି ଇନ୍ଦ୍ରମୂର୍ତ୍ତି, କିନ୍ତୁ ଏଥିମଧ୍ୟରୁ ଗୋଟିକୁ ଭ୍ରମରେ ଇନ୍ଦ୍ରାଣୀ ବୋଲି ସ୍ଥାନୀୟ ଲୋକେ କହିଥାନ୍ତି । ଏହି ମୂର୍ତ୍ତି ଦୁଇଟିରେ ଗଙ୍ଗ ରାଜତ୍ୱକାଳର କଳାର ସମସ୍ତ ଚିହ୍ନ, ବିଦ୍ୟମାନ ରହିଛି । ଏମାନଙ୍କ ପ୍ରଭାମଣ୍ଡଳ, ଅଙ୍ଗଭୂଷଣ ଓ "ବନଲତା" ଇତ୍ୟାଦି ଗଙ୍ଗକଳାର ଚିହ୍ନର ପରିଚାୟକ । ଏଣୁ ଚୋଡ଼ଗଙ୍ଗଙ୍କ ଦ୍ୱାରା ଏହି ଦୁର୍ଗ ନିର୍ମିତ ହୋଇଥିଲା ବୋଲି ଯେଉଁ କିମ୍ବଦନ୍ତୀ ଅଛି, ତାହା ଏହି ମୂର୍ତ୍ତିମାନଙ୍କ ଦ୍ୱାରାହିଁ ସମର୍ଥିତ ହୋଇଥାଏ ।

ଏଣୁ ଏହାହିଁ ପ୍ରତିପାଦିତ ହୁଏ ଯେ ଚୋଡ଼ଗଙ୍ଗଦେବ ଏହି ଦୁର୍ଗକୁ ନିର୍ମାଣ କରିଥିଲେ । "ଅମରାବତୀ" ଏହି ନାମଟି ମଧ୍ୟ ଏହି ସିଦ୍ଧାନ୍ତରେ ଉପନୀତ ହେବାପାଇଁ ସାହାଯ୍ୟ କରିଥାଏ ।

ଗୈଙ୍ଗଙ୍କ ଓ ତାଙ୍କ ପୂର୍ବପୁରୁଷମାନେ ଦକ୍ଷିଣରେ ରାଜତ୍ୱ କରୁଥିଲେ ଓ ଦକ୍ଷିଣର ନଗରେ ନଗରୀ ସହିତ ସୁପରିଚିତ ଥିଲେ । ଗଙ୍ଗେଙ୍କ ଯେତେବେଳେ ଓଡ଼ିଶା ଦଖଲ କଲେ, ସେତେବେଳେ କୃଷ୍ଣା ନଦୀ ମୁହାଣର ଅଳ୍ପ ଦୂରରେ ବୌଦ୍ଧକୀର୍ତ୍ତି ବିମଣ୍ଡିତ ହୋଇ ଅମରାବତୀନାମକ ନଗରୀ ବିଦ୍ୟମାନ ଥିଲା । ଏଣୁ ଗଙ୍ଗେଙ୍କ ଓଡ଼ିଶା ଅଧିକାର କରି ଯେଉଁ ଦୁର୍ଗ ବା କଟକ ସ୍ଥାପନ କଲେ ତାର ନାମ ଦେଲେ ଦ୍ୱିତୀୟ ଅମରାବତୀ କଟକ ବା ଅଭିନବ ଅମରାବତୀ-କଟକ । ତାଙ୍କପୂର୍ବ କଟକର ଇତିହାସ ଅନେକତା କରିବେଲେ ଦେଖାଯାଉଛି ଯେ କୋଶଳ ରାଜ୍ୟରେ (ଉପର ମହାନଦୀ ଉପତ୍ୟ-କାରେ) ଯଯାତିନଗର ନାମକ ଗୋଟିଏ ନଗର ଅବସ୍ଥିତ ଥିଲା; ଏଣୁ କୋଶଳକେଶରୀମାନେ (ସୋମବଂଶୀ କେଶରୀମାନେ) ଓଡ଼ିଶା ଅଧିକାର କରିବା ପରେ ଜାଜପୁରରେ ଅଭିନବ ଯଯାତିନଗର ସ୍ଥାପନ କଲେ । ପିତୃପିତାମହଙ୍କ ରାଜ୍ୟରେ ଥିବା ନଗରମାନଙ୍କ ନାମାନୁସାରେ ବିଜିତ ରାଜ୍ୟରେ ନୂତନ ନଗରମାନ ସ୍ଥାପନକରିବା ପ୍ରାଚୀନ ରାଜବଂଶମାନଙ୍କର ଗୋଟିଏ ଚିରାଚରିତ ପ୍ରଥା ଥିଲା । ପଣ୍ଡିତମାନେ ସ୍ଥିର କରିଛନ୍ତି ଯେ ଦକ୍ଷିଣର ପାଣ୍ଡ୍ୟବଂଶୀୟ ରାଜା-ମାନେ ଉତ୍ତର ଭାରତରୁ ଆସିଥିଲେ ଓ ନିଜ ବଂଶକୁ ପାଣ୍ଡୁବଂଶ ବା ପାଣ୍ଡବ ବଂଶ ବୋଲି ପରିଚୟ ଦେଉଥିଲେ । ଦକ୍ଷିଣରେ ରାଜ୍ୟ ଜୟ କରି ବସତି ସ୍ଥାପନ କଲା ପରେ ଉତ୍ତର ଭାରତର ମଥୁରା-ନଗରୀର ନାମାନୁସାରେ ସେମାନେ ଦକ୍ଷିଣ ଭାରତରେ ମଧ୍ୟ ମଥୁରା ନଗରୀ ସ୍ଥାପନ କରିଥିଲେ; କିନ୍ତୁ ଦକ୍ଷିଣ ଭାରତୀୟମାନଙ୍କ ଉଚ୍ଚାରଣ ଅନୁଯାୟୀ ଏହି ମଥୁରା ବର୍ତ୍ତମାନ ମଦୁରାରେ ପରିଣତ ହୋଇଛି ।

ଅତଏବ, ବର୍ତ୍ତମାନ ମୂର୍ତ୍ତିମାନଙ୍କ କଳା ବୈଶିଷ୍ଟ୍ୟରୁ ଓ ଏହି ପ୍ରାଚୀନ ଦୁର୍ଗର ନାମ କରଣରୁ ଏହା ପ୍ରମାଣିତ ହୁଏ ଯେ ଏହି ଦୁର୍ଗ ଚୋଡ଼ଗଙ୍ଗଦେବଙ୍କ କୀର୍ତ୍ତି । କିନ୍ତୁ ଉତ୍କଳରେ ଅନେକ ସ୍ଥାନ ଥିବା ସ୍ଥଳେ ଦୁର୍ଗ ନିର୍ମାଣ କରିବା ପାଇଁ ସେ ଏହି ସ୍ଥାନକୁ ନିର୍ବାଚନ କଲେ କାହିଁକି ? ଛତିଆର ଭୌଗୋଳିକ ପରିସ୍ଥିତି ଲକ୍ଷ୍ୟକଲେ ଜଣାଯାଏ ଯେ ଏହା ବ୍ରାହ୍ମଣୀ ଓ ବିରୂପାର ପ୍ରାୟ ମଧ୍ୟ ସ୍ଥଳରେ ଅବସ୍ଥିତ । ଏଣୁ ଅରଣ୍ୟବେଷ୍ଟିତ ଏହି ସ୍ଥାନଟି ସାମରିକ ଦୃଷ୍ଟିରୁ ଗୋଟିଏ ଘାଟି ସ୍ଥଳ ଥିଲା । ଏଠାରେ ଏହା ଉଲ୍ଲେଖଯୋଗ୍ୟ ଯେ ପ୍ରାଚୀନ କାଳରେ ସାମରିକ ଅଭିଯାନ ଚଳାଇବାବେଳେ କିମ୍ବା ଶତ୍ରୁର ଗତିପଥ ଅବରୋଧ କରିବାବେଳେ ନଦୀମାନଙ୍କୁ ଦୁରତିକ୍ରମଣୀୟ ବାଧା ରୂପେ ଗ୍ରହଣ କରାଯାଉ ଥିଲା । ଏହା ଛଡ଼ା ଚୋଡ଼ଗଙ୍ଗ ଓଡ଼ିଶା ଦଖଲ କରିବା ପୂର୍ବରୁ ଛତିଆ-ଅଞ୍ଚଳଟି ସଭ୍ୟତାର ଗୋଟିଏ କେନ୍ଦ୍ରସ୍ଥଳୀ ଥିଲା । ଅମରାବତୀ ଠାରୁ ପ୍ରାୟ ୪ ମାଇଲ ଦୂରରେ ଜଲୌକା ନାମକ ସ୍ଥାନରେ ବର୍ତ୍ତମାନ ମୁଦ୍ଧା ଅନିବଦ୍ୟ ମନ୍ଦିରମାନଙ୍କ ଧ୍ୱଂସାବଶେଷ ରହିଛି । ପ୍ରଧାନ ମନ୍ଦିରଟି ବିଷ୍ଣୁ ମନ୍ଦିର ଥିଲା ଓ ବର୍ତ୍ତମାନ ସୁଦ୍ଧା ସେଥିରେ ଗୋଟିଏ ସୁନ୍ଦର ବିଷ୍ଣୁମୂର୍ତ୍ତି ରହିଅଛି । ପ୍ରଧାନ ମନ୍ଦିରଟି ପ୍ରାୟ ଧ୍ୱଂସ ପାଇଛି, କିନ୍ତୁ ଏହାର ଚାରି କୋଣରେ ଯେଉଁ ଚାରୋଟି କ୍ଷୁଦ୍ର ମନ୍ଦିର ଥିଲା, ସେ ଗୁଡ଼ିକ କେତେକାଂଶରେ ଭଲ ରହିଛି । ଏ ସମସ୍ତ ମନ୍ଦିରର ଗଠନଶୈଳୀ ଓ କାରୁକଳା ଭୁବନେଶ୍ୱରର ମୁକ୍ତେଶ୍ୱର ମନ୍ଦିରର ଗଠନଶୈଳୀ ଓ କାରୁକଳା ପରି । ଏହି ମନ୍ଦିରଗୁଡ଼ିକୁ ପଞ୍ଚପାଣ୍ଡବ ମନ୍ଦିର କୁହାଯାଏ । ଏମାନଙ୍କ ଅଦୂରରେ ଟଙ୍କେଶ୍ୱରଠାରେ ଗୋଟିଏ ମନ୍ଦିରର ଯେଉଁ ଭଗ୍ନାବଶେଷ ଅଛି, ତହିଁରେ ଗଙ୍ଗ-ମନ୍ଦିରମାନଙ୍କ କଳା ଓ ସ୍ଥାପତ୍ୟର ସମସ୍ତ ଚିହ୍ନ ରହିଛି ।

# ଚଉଦ୍ୱାର କଟକ

( ଯଜନ ନଗର )

ଚଉଦ୍ୱାର ବର୍ତ୍ତମାନ ସୁଦ୍ଧା ବୃହତ୍ତର କଟକର ଅଂଶବିଶେଷ । ପ୍ରାଚୀନ କାଳରେ ମଧ୍ୟ ଉଭୟ ସ୍ଥାନ ମଧ୍ୟରେ ଏହି ଘନିଷ୍ଠ ସମ୍ବନ୍ଧ ଥିଲା । ବିରୂପା ଓ ମହାନଦୀର ଏକ ପାର୍ଶ୍ୱରେ ବାରଣସୀ ଓ ବାରବାଟୀ କଟକ, ଓ ଅପରପାର୍ଶ୍ୱରେ ଚଉଦ୍ୱାର କଟକ ବହୁଶତବର୍ଷ ଧରି ଉତ୍କଳର ଦ୍ୱୈତ୍‌ରାଜଧାନୀ ରୂପେ କାର୍ଯ୍ୟ କରି ଆସିଥିଲେ । ବାରଣସୀ ଓ ବାରବାଟୀର ପ୍ରତିନିଧି ଆଧୁନିକ କଟକ ସହର ବର୍ତ୍ତମାନ ସୁଦ୍ଧା ତାର ପୂର୍ବ ପ୍ରତିଷ୍ଠା ରକ୍ଷା କରିଛି ଓ ଏହାର ଇତିହାସ ମଧ୍ୟ କେତେକ ପରିମାଣରେ ଜଣା ପଡୁଛି, କିନ୍ତୁ ଚଉଦ୍ୱାରର ପ୍ରାଚୀନ ନାମ ପର୍ଯ୍ୟନ୍ତ ଲୋପ ପାଇଛି । ଚଉଦ୍ୱାର ନାମଟି ବେଶୀ ପ୍ରାଚୀନ ନୁହେ । ଷୋଡ଼ଶ ଶତାବ୍ଦୀର ଶେଷ ଭାଗରେ ବା ସପ୍ତଦଶ ଶତାବ୍ଦୀର ପ୍ରଥମ ଭାଗରେ ଲିଖିତ ମାଦଳାପାଞ୍ଜି-ଠାରୁ ପ୍ରାଚୀନତର ଐତିହାସିକ ଲେଖା ବା ଗ୍ରନ୍ଥରେ ଏହି ଚଉଦ୍ୱାର ନାମଟି ଦେଖାଯାଏ ନାହିଁ । ଏ ସ୍ଥାନର ପ୍ରାଚୀନ ନାମ ଲୋପ ପାଇବା ପରେ ଚତୁର୍ଦ୍ୱାର ବିଶିଷ୍ଟ ପ୍ରାଚୀନ ଦୁର୍ଗର ଧ୍ୱଂସାବ-ଶେଷ ଦେଖି ଲୋକମାନେ ଚଉଦ୍ୱାର ନାମଟି ସୃଷ୍ଟି କରିଛନ୍ତି । କେତେକ ଲୋକମାନଙ୍କ "ବହୁଦ୍ୱାର ଶୋଭା ଦୁର୍ଗ ଚଉଦ୍ୱାର" କଥାଟି ଠିକ୍ ନୁହେ । ପ୍ରକୃତରେ ଏ ଦୁର୍ଗର ବହୁଦ୍ୱାର ନଥିଲା । ଡେଭେନ୍ୟୁ ଡିପାର୍ଟମେଣ୍ଟ ତରଫରୁ ଶ୍ରୀଯୁକ୍ତ ସୁଧାକର ପଟ୍ଟନାୟକ ବହୁ

ପରିଶ୍ରମ କରି ରାଜଧାନୀରେ ଯେଉଁ ନକ୍‌ସା ଛାପିଥିଲେ, ସେଥିରେ କେବଳ ଗୃହଗୁଡ଼ିକ ଦ୍ୱାରା ଦେଖାଯାଏ ।

**ପଠାଣ,** ମୋଗଲ ଓ ମହାରାଷ୍ଟ୍ରମାନଙ୍କ ଅମଳରେ କଟକସହରର ପ୍ରାଧାନ୍ୟ ବଜାୟ ଥିଲା । ବ୍ରିଟିଶ୍ ରାଜତ୍ୱ ଆରମ୍ଭ ହେବା ପରେ ମଧ୍ୟ ଏହି ପ୍ରାଧାନ୍ୟ ରହିଲା । ଓଡ଼ିଶା ବ୍ରିଟିଶ୍ ସାମ୍ରାଜ୍ୟର ଅର୍ନ୍ତଭୁକ୍ତ ହେବା ସଙ୍ଗେ ସଙ୍ଗେ ସମଗ୍ର ଦେଶଟି କଟକ ଡିଭିଜନ ବା କଟକ ଡିଭିଜନ ନାମରେ ଅଭିହିତ ହେଲା । କଟକ କହିଲେ ଓଡ଼ିଶା ବାହାରର ଲୋକେ ସମଗ୍ର ଓଡ଼ିଶା ଦେଶଟିକୁ ବୁଝୁଥିଲେ । ସେହିପରି ଭାରତରେ ମୁସଲମାନ ରାଜତ୍ୱର ପ୍ରାରମ୍ଭଠାରୁ ମୋଗଲ ରାଜତ୍ୱ ପର୍ଯ୍ୟନ୍ତ ଓଡ଼ିଶା ବାହାରର ଲୋକେ ଓଡ଼ିଶାକୁ ଯାଜନଗର ବୋଲି କହୁଥିଲେ । ତ୍ରୟୋଦଶ ଶତାବ୍ଦୀର ପ୍ରାରମ୍ଭରୁ ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଶା ଦେଶ ଯେ ଯାଜନଗର ନାମରେ ପରିଚିତ ଥିଲା, ଏହାର ବହୁ ପ୍ରମାଣ ମୁସଲମାନ୍ ଐତିହାସିକ-ମାନଙ୍କ ବିବରଣୀରୁ ମିଳେ । ମିହ୍ନାଜ୍ ଶିରାଜଙ୍କ 'ତବାକତ୍-ଇ-ନାସିରି' ନାମକ ଗ୍ରନ୍ଥରୁ ଜଣାଯାଏ ଯେ ବଙ୍ଗ ଓ ବିହାରର ବିଜେତା ବଖତିଆର ଖିଲ୍‌ଜି ୧୨୦୫ ଖ୍ରୀଷ୍ଟାବ୍ଦରେ ମହମ୍ମଦ୍ ଶିରନ୍ ଓ ଅହମ୍ମଦ୍ ଇରନ୍ ନାମକ ମୁସଲମାନ ଭ୍ରାତୃଦ୍ୱୟଙ୍କୁ ଯାଜନଗର ବା ଓଡ଼ିଶା ଦଖଲ କରିବାକୁ ଆଦେଶ ଦେଇଥିଲେ, କିନ୍ତୁ ଆସାମ-ଅଭିଯାନରେ ବଖତିଆର୍ ଖିଲ୍‌ଜିଙ୍କ ହଠାତ୍ ମୃତ୍ୟୁ ଘଟିବାରୁ ମୁସଲମାନ ଭ୍ରାତୃଦ୍ୱୟ ଏହି ଆଦେଶ ପାଳନ କରି ପାରି ନଥିଲେ । ଦାସ ବଂଶୀୟ ସୁଲତାନ କୁତୁବୁଦ୍ଦିନ୍‌ଙ୍କ ଦ୍ୱାରା ନିଯୋଜିତ ବଙ୍ଗର ଶାସନକର୍ତ୍ତା ଗିଆସୁଦ୍ଦିନ୍ ଲକ୍ଷ୍ମୌତି, ଯାଜନଗର, କାମରୁପ ବା

ଆସାମ ଓ ତିହୁତରୁ କର ଦାବି କରିଥିବା କଥା ତବାକତ୍-ଇ-ନାସିରିରେ ବର୍ଣ୍ଣିତ ଅଛି । କୋଣାର୍କ ନିର୍ମାତା ପ୍ରବଳପ୍ରତାପୀ ଲାଙ୍ଗୁଳା ନରସିଂହ (ପ୍ରଥମ ନରସିଂହ) ବଙ୍ଗଶାସକ ତୁଘାନ ଖାଁଙ୍କ ଅମଳରେ ଏକାଧିକ ଥର ବଙ୍ଗ ଆକ୍ରମଣ କରିଥିଲେ ଓ ମୁସଲମାନମାନଙ୍କୁ କଟାସିନ୍ ଦୁର୍ଗଠାରେ ପରାସ୍ତ କରି ଲକ୍ଷ୍ନୌତି (ମୁସଲମାନ୍ ବଙ୍ଗର ରାଜଧାନୀ ଲକ୍ଷଣାବତୀ) ନଗରକୁ ଆକ୍ରମଣ ଓ ଅବରୋଧ କରିଥିଲେ । ଏହି ଲାଙ୍ଗୁଳା ନରସିଂହଙ୍କୁ ମୁସଲମାନ୍ ଇତିହାସରେ ଯାଜନଗରର ରାଜା ବୋଲି କୁହାଯାଇଛି ଓ ଏହାଙ୍କ ଅଧୀନରେ ସ୍ଥିତ କରିଥିବା "ସାବନ୍ତର" ବା ସାମନ୍ତରାୟଙ୍କୁ ଯାଜନଗର ରାଜାଙ୍କ ଜାମାତା ବୋଲି କୁହାଯାଉଛି । ଜିଆଉଦ୍ଦିନ୍ ବାର୍ଣ୍ଣିଙ୍କ ତାରିଖ ଇ-ଫିରୋଜ-ସାହିରୁ ଜଣାଯାଏ ଯେ ଦାସ ବଂଶୀୟ ସୁଲତାନ୍ ବଲ୍ବନ୍‌ଙ୍କ ଅମଳରେ ବଙ୍ଗନବାବ୍ ତୁଗ୍ରିଲଖାଁ ଦିଲ୍ଲୀସମ୍ରାଟ୍ ବିରୁଦ୍ଧରେ ବିଦ୍ରୋହ କରି ଯାଜନଗରକୁ ପଳାଇ ଆସିଥିଲେ । ଏହି ଗ୍ରନ୍ଥରେ ଫିରୋଜଶାହ ଯାଜନଗରର ରାଜା (ଫାର୍ସିରେ ସାରଭାନ ଦେଓ, ଓଡ଼ିଆରେ ଭାନୁଦେବ) ବା ଗଙ୍ଗବଂଶୀୟ ତୃତୀୟ ଭାନୁଦେବଙ୍କୁ ୧୩୬୦ ଖ୍ରୀଷ୍ଟାବ୍ଦରେ ଆକ୍ରମଣ କରିଥିବାର ବିଶଦ ବିବରଣ ରହିଛି । ଫେରିସ୍ତାଙ୍କ ଇତିହାସରେ ବର୍ଣ୍ଣିତ ଅଛି ଯେ ମାଲବର ସୁଲତାନ ହୋଶାଙ୍ଗଶାହ ୧୪୨୧ ଖ୍ରୀଷ୍ଟାବ୍ଦରେ ଯାଜନଗର ରାଜାଙ୍କୁ ଘୋଡ଼ା ବ୍ୟବସାୟୀ ବେଶରେ ଆକ୍ରମଣ କରିଥିଲେ । ଏହି ଘଟଣା ଆଇନ୍-ଇ-ଆକବରୀରେ ମଧ୍ୟ ସ୍ଥାନ ପାଇଛି ।

ମୁସଲମାନ୍ ଐତିହାସିକମାନେ ଯାଜନଗର ସମ୍ବନ୍ଧରେ କଅଣ ଲେଖିଛନ୍ତି ଓ ମୁସଲମାନ୍ ଐତିହାସିକ ଗ୍ରନ୍ଥମାନଙ୍କର

ଅନୁବାଦକ ଓ ଟୀକାକାର ଇଲିଅଟ୍, ଡ଼ଓସନ୍, ବ୍ଲକ୍‌ମ୍ୟାନ୍, ଟେଲେଣ୍ଟୀ ଓ ଜାରେଟ୍ ପ୍ରଭୃତି ଯାଜନଗରର ଅବସ୍ଥିତି ସମ୍ବନ୍ଧରେ କଅଣ କହିଛନ୍ତି, ତାହା ଲେଖିବାକୁ ଗଲେ ବହୁ କଥା ଲେଖିବାକୁ ହେବ, କିନ୍ତୁ ସମସ୍ୟାର ସମାଧାନ ହେବ ନାହିଁ । କିଏ କଅଣ କହିଛନ୍ତି, ତାହା ଲେଖିଦେଲେ ଐତିହାସିକର କର୍ତ୍ତବ୍ୟ ଶେଷ ହୁଏ ନାହିଁ । ବୈଦେଶିକ ପଣ୍ଡିତମାନେ ଆମ ଦେଶର ବିସ୍ତୃତ ଭୌଗୋଳିକ ବିବରଣ ଜାଣନ୍ତି ନାହିଁ, କିମ୍ବା ଆମଭାଷା, କିମ୍ବଦନ୍ତୀ ଓ ପ୍ରାକୃତାଖ୍ୟାନ ସମ୍ପଦ ସହିତ ସେମାନେ ସୁପରିଚିତ ନୁହନ୍ତି । ଏଣୁ ସେମାନେ ଯାହା ଲେଖିଯାଇଛନ୍ତି, ସେଥିପ୍ରତି ଅମ୍ଭମାନଙ୍କ ଅଶ୍ରଦ୍ଧା ନାହିଁ, କିନ୍ତୁ ତାକୁ ସର୍ବତୋଭାବରେ ଗ୍ରହଣ କରିବା ମଧ୍ୟ ଆମ୍ଭମାନଙ୍କ ପକ୍ଷରେ ସମ୍ଭବପର ନୁହେ । କେହି କେହି ବଙ୍ଗ ଦେଶର ଦକ୍ଷିଣପୂର୍ବରେ ଆଉ ଗୋଟିଏ ଯାଜନଗର ଥିବାର ଅନୁମାନ କରିଛନ୍ତି । ଏହା ଯଦି ସତ୍ୟ ହୁଏ, ତଥାପି ଏହା ସ୍ୱୀକାର କରିବାକୁ ହେବ ଯେ ଅଧିକାଂଶ ସ୍ଥଳରେ ମୁସଲମାନ୍ ଐତିହାସିକ-ମାନେ ଯାଜନଗରକୁ ଓଡ଼ିଶା ଅର୍ଥରେହିଁ ଲେଖିଯାଇଛନ୍ତି । କିନ୍ତୁ ଯେଉଁ ନଗରୀ ଏତେ ପ୍ରସିଦ୍ଧ ହୋଇ ନିଜ ନାମାନୁସାରେ ସମଗ୍ର ଓଡ଼ିଶା ଦେଶକୁ ଯାଜନଗର ନାମରେ ପ୍ରଖ୍ୟାତ କଲା, ସେହି ନଗରୀର ଭୌଗୋଳିକ ପରିସ୍ଥିତି ସମ୍ବନ୍ଧରେ କୌଣସି ପଣ୍ଡିତ ସ୍ପଷ୍ଟ ଧାରଣା ସୃଷ୍ଟି କରିପାରି ନାହାନ୍ତି । ଯାଜପୁର ଓ ଯାଜନଗର ମଧ୍ୟରେ ଧ୍ୱନିଗତ ସାମ୍ୟ ଥିବାରୁ ଉଭୟକୁ ଏକ ଓ ଅଭିନ୍ନ ସ୍ଥାନ ବୋଲି ଅନେକେ କହି ଯାଇଛନ୍ତି । ଯେଉଁ ପଣ୍ଡିତମାନେ ଗଙ୍ଗ-ବଂଶର ଇତିହାସ ଲେଖିଛନ୍ତି, ସେମାନଙ୍କ ମଧ୍ୟରେ ସର୍ବଶେଷ ଲେଖକ ଅଧ୍ୟାପକ ସୁବ୍ରାଓ ମଧ୍ୟ ଏହି ମତ ପୋଷଣ କରିଛନ୍ତି । ଚଣ୍ଡଦ୍ୱାର କିମ୍ବା ଯାଜପୁର ଯଦି ଯାଜନଗର ନାମରେ ଅଭିହିତ

ହେଉଥିଲା, ତାହାହେଲେ ତାର ପ୍ରମାଣ କେଉଁଠାରେ ଅଛି, ଏ କଥା କେହି ଦେଖାଇ ନାହାନ୍ତି ।

ଆମ ଦେଶରେ ଭାଷା ଓ କିମ୍ବଦନ୍ତୀ ଇତ୍ୟାଦିରେ ବୈଦେଶିକ ପଣ୍ଡିତମାନଙ୍କ ଯଦି ପ୍ରବେଶ ଥାଆନ୍ତା, ତାହାହେଲେ ସେମାନେ ମଧ୍ୟ ଜାଣିପାରିଥାନ୍ତେ ଯେ ଯାଜନଗର ଆଧୁନିକ ଚଉଦ୍ୱାର ଛଡ଼ା ଅନ୍ୟ କୌଣସି ସ୍ଥାନ ନୁହେ । ପଞ୍ଚଦଶ ଶତାବ୍ଦୀର ପ୍ରଥମ ପାଦରେ ଲିଖିତ ଶାରଳା ଦାସଙ୍କ ମହାଭାରତରେ ଯଜନ ନଗରର ବା ଯାଜନଗରର ଅବସ୍ଥିତି ସୁନିର୍ଦ୍ଦିଷ୍ଟ ଭାବରେ ଦିଆଯାଇଛି । ପାଣ୍ଡବମାନେ ଯେଉଁ ସ୍ଥାନରୁ ଯାତ୍ରାକଲେ ଓ ଯେଉଁ ଯେଉଁ ସ୍ଥାନରେ ଅବସ୍ଥାନ କରି ହିମାଳୟକୁ ସ୍ୱର୍ଗାରୋହଣ କରିବାକୁ ଗଲେ, ତାହାର ବିସ୍ତୃତ ବିବରଣ ଏହି ମହାଭାରତରେ ସ୍ୱର୍ଗାରୋହଣ ପର୍ବରେ ଦିଆଯାଇଛି । ଶାରଳାଦାସଙ୍କ ମତରେ ପାଣ୍ଡବମାନେ ସ୍ୱର୍ଗାରୋହଣପାଇଁ ଓଡ଼ିଶାରୁହିଁ ଯାତ୍ରା କରିଥିଲେ । ସ୍ୱର୍ଗାରୋହଣ ପର୍ବର ପ୍ରାରମ୍ଭରେ ଲେଖା ଅଛି—

ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ପାଣ୍ଡବମାନେ ରହିଲେ ଯେ ଅମରାବତୀ ।
ସୁହାଣୀ କନ୍ୟାକୁ ବିଭା ହେଲେ ଧର୍ମସୁତ
ରହିଲେ ଯେ ପଞ୍ଚତ୍ରିଶ ବର୍ଷ ପର୍ଯ୍ୟନ୍ତ ।
ପରୀକ୍ଷିତେ ରାଜ୍ୟ ଦେଲେ ଯଜନ ନଗରୀ
ପଞ୍ଚ କଟକର ମଧ୍ୟେ ଏକ ଅଧିକାରୀ ।

ଉଲ୍ଲିଖିତ ପଦମାନଙ୍କରେ ଥିବା ଅମରାବତୀ ଓ ଯଜନନଗର ଆଧୁନିକ ଛତିଆ ଓ ଚଉଦ୍ୱାର ଛଡ଼ା ଅନ୍ୟ କୌଣସି ସ୍ଥାନ ହୋଇ ନ ପାରେ । ଶାରଳା ଦାସ ମହାଭାରତ ଲେଖିବା ବେଳକୁ ପଞ୍ଚ କଟକ ନାମଟି ଓଡ଼ିଶାରେ ସୁପରିଚିତ ହୋଇସାରିଥିଲା । ବର୍ତ୍ତମାନ ସୁଦ୍ଧା ଚଉଦ୍ୱାରରେ କିମ୍ବଦନ୍ତୀ ପ୍ରଚଳିତ ଅଛି ଯେ ସେଠାରେ ଜନମେଜୟ ସର୍ପଯଜ୍ଞ କରିଥିଲେ । ଯଜନ ନଗରୀ ବା ଚଉଦ୍ୱାରରେ ଜନମେଜୟ ଯଜ୍ଞ କରିଥିବା କଥା ପ୍ରଚଳିତ ଥିବାରୁ ତାଙ୍କ ପିତା ପରୀକ୍ଷିତଙ୍କୁ ଯୁଧିଷ୍ଠିର ଏହି ଯଜନ ନଗରୀରେ ରାଜ୍ୟ ଦେଇ ପଞ୍ଚକଟକର ଏକମାତ୍ର ଅଧିକାରୀ କରିଥିଲେ ବୋଲି ଶାରଳାଦାସ ଲେଖିଯାଇଛନ୍ତି ।

ସ୍ୱର୍ଗାରୋହଣ ପର୍ବରେ ବର୍ଣ୍ଣିତ ଅମରାବତୀ, ଯଜନଗର ଓ ପଞ୍ଚକଟକ ଯେ ଓଡ଼ିଶା ଛଡ଼ା ଅନ୍ୟ କୌଣସି ଦେଶରେ ଅବସ୍ଥିତ ନଥିଲା, ଏ କଥା ମଧ୍ୟ ଶାରଳା ଦାସ ମହାଭାରତରୁ ପରିଷ୍କାର ଭାବରେ ଜଣାଯାଏ । ଏହି ପର୍ବରେ ବର୍ଣ୍ଣିତ ଅଛି ଯେ ବେଦ-ପୁରର ତପତ ନାମକ ଜଣେ କୃଷିକାର ଓ ସୁଚେଷ୍ଟନ ନାମକ ଜଣେ ବ୍ରାହ୍ମଣ ପରସ୍ପର ମଧ୍ୟରେ ଝଗଡ଼ା କରି, ଯୁଧିଷ୍ଠିର ଅମରାବତୀରେ ଅବସ୍ଥାନ କରୁଥିବାବେଳେ ତାଙ୍କ ପାଖରେ ଗୁହାରି କରିଥିଲେ । ଝଗଡ଼ାର କାରଣ ଥିଲା ଗୋଟିଏ ସୁନାଚୁଡ଼ି । ଏହାକୁ ବ୍ରାହ୍ମଣ କିମ୍ବା କୃଷିକାର କେହି ନେବାପାଇଁ ରାଜି ହେଉ ନଥିଲେ । ଯୁଧିଷ୍ଠିର ସେମାନଙ୍କ ନିର୍ଲୋଭତା ଦେଖି ବିସ୍ମିତ ହେଲେ ଓ ସହଦେବଙ୍କୁ ପଚାରିଲେ—ତେବେ କଅଣ କଳିଯୁଗ ଆସିନାହିଁ ? ସହଦେବ କହିଲେ ଯେ କଳିଯୁଗ ଆସିଛି, ମାତ୍ର ସେ ତାଙ୍କୁ ବାନ୍ଧି ପକାଇଛନ୍ତି ।

କଳିଯୁଗ ବାନ୍ଧିଥିଲେ ଯେଉଁ ବାନସ୍ତରେ
କଳ କଳାଗଡ଼ ବୋଲି ହୋଇଲା ସେଠାରେ ॥

କଳକଳାଗଡ଼ ବର୍ତ୍ତମାନ ଯୁଦ୍ଧା ଛଡ଼ଆ ବା ଅମରାବତୀର ଅଦୂରବର୍ତ୍ତୀ ସ୍ଥାନରେ ଅବସ୍ଥିତ । ଅମରାବତୀରୁ ଯାତ୍ରୀମାନେ ସେଉଁଠାକୁ ଗଲେ ତାହା ବର୍ଣ୍ଣନା କରିବାକୁ ଯାଇ ଶାରଳାଦାସ ଲେଖିଛନ୍ତି—

ଯୁଧିଷ୍ଠିର ଦେବ ଏକଯୁଗ ରାଜ୍ୟ କରି
ଚିତ୍ରୋତ୍ପଳା ପାରେ ଗଲେ ଯଜନ ନଗରୀ ।
ଚିତ୍ରୋତ୍ପଳା ପାର ହୋଇ ରହିଲେ ସେ ସ୍ଥାନ
ଅନ୍ୟ ନାମର ସେ ସ୍ଥାନର ଧର୍ମପୁର ଜାଣ ।

ଏହି ଯଜନ ନଗରୀରେ ଅବସ୍ଥାନ କରୁଥିବାବେଳେ ଯୁଧିଷ୍ଠିର ହଂସଧ୍ୱଜଙ୍କ କନ୍ୟା ସୁହାଣୀକୁ ବିବାହ କରି ଶେଷବେଳକୁ ତାକୁ ଶିଖରେଶ୍ୱର ମହାଦେବଙ୍କ ସେବାରେ ନିଯୁକ୍ତ କରି ଥିଲେ । ଏହି ଶିଖରେଶ୍ୱର ମହାଦେବ ବର୍ତ୍ତମାନ ଯୁଦ୍ଧା କପିଳାସ ନିକଟସ୍ଥ ପାହାଡ଼ରେ ଅବସ୍ଥିତ । ଉଲ୍ଲିଖିତ ପଦ୍ୟାଂଶରେ ଯଜନନଗରର ଅପରନାମ ଧର୍ମପୁର ଥିଲା ବୋଲି କୁହାଯାଇଛି । ଭୀମସେନ ଯୁଧିଷ୍ଠିରଙ୍କ ଆଜ୍ଞାରେ ଏହି ଧର୍ମପୁର ବା ଯଜନ ନଗରରୁ ଅନେକ ଗୁଡ଼ ଏ ଧାନ ଆଣି ଗୁଡ଼ଳ କଲେ ଓ ଭାତ ରାନ୍ଧି ଶିଖରେଶ୍ୱର ମହାଦେବଙ୍କ ପାଖରେ ଅଜାଡ଼ି ଦେଇଥିଲେ । ଏହି ସବୁ ବର୍ଣ୍ଣନାରୁ ଏହାହିଁ ପ୍ରମାଣିତ ହୁଏ ଯେ ଅମରାବତୀ, କଳକଳା, ଯଜନ ନଗର ବା ଧର୍ମପୁର ଓ ଶିଖରେଶ୍ୱର ମହାଦେବ, ଏ

ସମସ୍ତେ ପରସ୍ପର ନିକଟବର୍ତ୍ତୀ ସ୍ଥାନମାନଙ୍କରେ ଅବସ୍ଥିତ ଥିଲେ ।

ଯଜନ ନଗର ବା ଧର୍ମପୁରରୁ ପାଣ୍ଡବମାନେ ଦକ୍ଷିଣାଭିମୁଖରେ ଯାତ୍ରା କଲେ—

ତହୁଁ ଚଳିଲେ ପାଣ୍ଡବେ ହୋଇ ହୃଷ୍ଟମତି
ଚିତ୍ରୋତ୍ପଳା ନଦୀପାର ହୋଇଣ ଯାଆନ୍ତି ।
ଚିତ୍ରୋତ୍ପଳା ନଦୀତୀରେ ବିଶ୍ୱେଶ୍ୱର ପୂଜି
ଅମର ଲିଙ୍ଗ ଦର୍ଶନେ ବହୁ ତୋଷ ଭଜି ।
ପ୍ରବେଶ ହୋଇଲେ ଯାଇ ଏକାମ୍ର ତୀର୍ଥେ
ବିନ୍ଦୁହ୍ରଦେ ସ୍ନାନ କରି ଦେଖି ବିଶ୍ୱନାଥେ ।

ଅଧୁନିକ କଟକ ସହରରେ ବିଶ୍ୱନାଥ ମହାଦେବ ବର୍ତ୍ତିମାନ ସ୍ଥିତ ଅଛନ୍ତି । ଚିତ୍ରୋତ୍ପଳା ବା ମହାନଦୀ କୂଳରେ ଅବସ୍ଥିତ ଏହି ମହାଦେବଙ୍କୁ ପୂଜାକରି ପାଣ୍ଡବମାନେ ଏକାମ୍ର ବା ଭୁବନେଶ୍ୱରରେ ପହଞ୍ଚିଲେ ଓ ସେଠାରୁ ପ୍ରାଚୀ ନଦୀ ପର୍ଯ୍ୟନ୍ତ ଗଲେ । କିନ୍ତୁ ପ୍ରାଚୀ ନଦୀ ପାର ହୋଇ ଆଉ ଅଧିକ ଦୂର ଅଗ୍ରସର ହେଲେ ନାହିଁ ; କାରଣ ପ୍ରାଚୀନଦୀର ଅପର ପାର୍ଶ୍ୱରେ ଥିବା ସ୍ଥାନମାନ ଅମେଧ୍ୟ । ପ୍ରାଚୀ ନଦୀ କୂଳରୁ ପାଣ୍ଡବମାନେ ଫେରି ଏକାମ୍ରରେ ରହେ ଓ ବୈତରଣୀ କୂଳରେ ପାଞ୍ଚଦିନ ରହି ହିମାଳୟ ଅଭିମୁଖରେ ଗୟା ତୀର୍ଥକୁ ବାହାରିଗଲେ ।

ସ୍ୱର୍ଗାରୋହଣ ପର୍ବରେ ଦିଆଯାଇଥିବା ପାଣ୍ଡବମାନଙ୍କ ଗତିପଥର ଏହାହିଁ ହେଲା ମୋଟା ମୋଟି ବର୍ଣ୍ଣନା । ଏ ସମ୍ବନ୍ଧରେ

ଦିଆଯାଇଥିବା ସ୍ଥାନ, ନଦୀ, ପର୍ବତ ଓ ଦେବତା ଇତ୍ୟାଦି ଯେ କେବଳ ଓଡ଼ିଶା ଦେଶର ଓ ଅନ୍ୟ କୌଣସି ଦେଶର ନୁହେ, ଏହା ପ୍ରମାଣ କରିବା ପାଇଁ ଟୀକାଟିପ୍ପଣୀର ଅବଶ୍ୟକତା ନାହିଁ। ଏହି ବର୍ଣ୍ଣନାରୁ ଜଣାଯାଏ ଯେ ପାଣ୍ଡବମାନେ ଅମରାବତୀରୁ ଯଜନନଗର ଗଲେ। ଏହି ଯଜନ ନଗରର ଅନ୍ୟନାମ ଥିଲା ଧର୍ମପୁର ଓ ଏହାର ଏକ ଦିଗରେ କପିଳାସ ପର୍ବତ ଓ ଶିଖରେଶ୍ୱର ମହାଦେବ ଏବଂ ଅନ୍ୟ ଦିଗରେ ଚିତ୍ରୋତ୍ପଳା (ମହାନଦୀ)ର ଅପରତୀରରେ ବାଣେଶ୍ୱର ମହାଦେବ ଅବସ୍ଥିତ ଥିଲେ। ଅନ୍ୟ କଥାରେ କହିବାକୁ ଗଲେ ଯଜନ ନଗରୀଟି କପିଳାସ ଓ କଟକର ମଧ୍ୟବର୍ତ୍ତୀ ସ୍ଥାନରେ ଅବସ୍ଥିତ ଥିଲା। ଏଣୁ ଏହା ଚଉଦ୍ୱାର ଛଡ଼ା ଅନ୍ୟ କୌଣସି ସ୍ଥାନ ହୋଇ ନ ପାରେ।

ତେବେ କେବଳ ଚିତ୍ରୋତ୍ପଳା ନାମଟି ସାମାନ୍ୟ ଭ୍ରମ ସୃଷ୍ଟି କରୁଛି। ମହାନଦୀ, ତାର ଶାଖାପ୍ରଶାଖା ଓ ଅନ୍ୟାନ୍ୟ କ୍ଷୁଦ୍ର ନଦୀକୁ ମଧ୍ୟ ଶାରଳାଦାସ ଚିତ୍ରୋତ୍ପଳା ନାମ ଦେଇ ଅଛନ୍ତି। ବୈତରଣୀ, ଚିତ୍ରୋତ୍ପଳା ଓ ପ୍ରାଚୀ ଭାରତର ମୁଖ୍ୟ ନଦୀମାନଙ୍କ ମଧ୍ୟରେ ସ୍ଥାନ ପାଇଛନ୍ତି। ଏଣୁ ପାଣ୍ଡବମାନେ କେବଳ ଏହି ନଦୀଗୁଡ଼ିକ ହିଁ ପାର ହୋଇଥିବା କଥା ଶାରଳାଦାସ ଲେଖିଯାଇଛନ୍ତି। ଅମରାବତୀ ବା ଆଧୁନିକ ଛତିଆରୁ ଯଜନନଗରୀ ବା ଆଧୁନିକ ଚଉଦ୍ୱାରକୁ ଆସିବାବେଳେ ପାଣ୍ଡବମାନେ କ୍ଷୁଦ୍ର ଗଙ୍ଗନଦୀ ପାର ହୋଇଥିବେ, କିନ୍ତୁ ଶାରଳା ଦାସ ତାକୁ ଚିତ୍ରୋତ୍ପଳା ବୋଲି ଲେଖିଛନ୍ତି। କିମ୍ବା ଛତିଆ ଓ ଚଉଦ୍ୱାର ମଧ୍ୟରେ ମହାନଦୀର ଅନ୍ୟ କୌଣସି ଶାଖା ପ୍ରବାହିତ ହେଉଥିଲା ଓ ବର୍ତ୍ତମାନ ତାହା

ଲୁପ୍ତ ହୋଇଅଛି । ଯଜନଗରୁ ବିଶ୍ୱେଶ୍ୱର ମହାଦେବଙ୍କ ପାଖକୁ ଆସିବାବେଳେ ପାଣ୍ଡବମାନେ ବରୁଣା ଓ ମହାନଦୀ ପାର ହୋଇଥିବେ, କିନ୍ତୁ ଶାରଳାଦାସ ଏହି ଉଭୟ ନଦୀକୁ ଚିତ୍ରୋତ୍ପଳା ବୋଲି କହିଛନ୍ତି ।

ଏହି ଆଲୋଚନାରୁ ଏହାହିଁ ପ୍ରତିପାଦିତ ହୁଏ ଯେ ଚତୁର୍ଦ୍ଦଶ ଶତାବ୍ଦୀ ପର୍ଯ୍ୟନ୍ତ ଚଉଦ୍ୱାରକୁ ଯଜନ ନଗର ବୋଲି କୁହାଯାଉ ଥିଲା । ଏଣୁ ଏହି ସମୟର ଓ ଏହା ପୂର୍ବର ମୁସଲମାନ ଐତିହାସିକମାନେ ଏହାକୁ ଯାଜନଗର ବୋଲି ଲେଖିଯାଇଛନ୍ତି । ପଞ୍ଚଦଶ ଶତାବ୍ଦୀରେ ଶାରଳାଦାସ ଓଡ଼ିଆ ମହାଭାରତ ଲେଖିବା ବେଳକୁ ଜନମେଜୟ ଚଉଦ୍ୱାର ବା ଯଜନନଗରରେ ଯଜ୍ଞ କରୁଥିବାର କମ୍ବଦନ୍ତୀ ଓ ଓଡ଼ିଶାର ପଞ୍ଚକଟକର କମ୍ବଦନ୍ତୀ ପ୍ରଚଳିତ ଥିଲା । ଏଣୁ ମୂଳ ମହାଭାରତରେ ପଞ୍ଚକଟକକୁ ଉତ୍କଳରେ ଅବସ୍ଥିତ ଥିବାର ଓ ଯଜନଗର ବା ଆଧୁନିକ ଚଉଦ୍ୱାରରେହିଁ ପାଣ୍ଡବମାନଙ୍କ ରାଜଧାନୀ ଥିବାରହିଁ ସେ ଅନୁମାନ କରିନେଲେ ।

କମ୍ବଦନ୍ତୀର ଜନମେଜୟ କିଏ ଓ ଯଜନଗରରେ ଅପର ନାମ ଧର୍ମପୁର କାହିଁକି ହେଲା, ଏହା ମଧ୍ୟ ଏଠାରେ ବିଚାର୍ଯ୍ୟ । ବ୍ରହ୍ମେଶ୍ୱର ଶିଳାଲିପିରୁ ଜଣାଯାଏ ଯେ ପ୍ରଥମ ଯଯାତିଙ୍କ ପିତା ଜନମେଜୟ ଉତ୍କଳର ରାଜାଙ୍କୁ କୁନ୍ତ୍ରଦ୍ୱାରା ମାରି ନେଇ ଓଡ଼ିଶା ଦଖଲ କରିଥିଲେ । ଏଣୁ ଏହି ଜନମେଜୟ ବିରୂପାକୂଳରେ ଯଜ୍ଞ କରୁଥିବା ଅସମ୍ଭବ ନୁହେ । ପ୍ରଥମ ଯଯାତିଙ୍କ ପ୍ରପୌତ୍ରଙ୍କ ନାମ ଥିଲା ଧର୍ମ ରଥ । ଏଣୁ ଚରିତ୍ରଚରିତ ପ୍ରଥାନୁସାରେ ବିରୂପାକୂଳସ୍ଥ

ଯଜନ ନଗର ତାଙ୍କ ନାମାନୁସାରେ ଧର୍ମପୁର ବୋଲି ଖ୍ୟାତ ହୋଇଥିବା ମଧ୍ୟ ଅସମ୍ଭବ ନୁହେଁ । କିମ୍ବଦନ୍ତୀ ସ୍ୱଭାବତଃ ସମସ୍ତ କଥା ଓଲଟ ପାଲଟ କରିପକାଏ । ଜଣେ ରାଜା ବା ବ୍ୟକ୍ତି ଯାହା କରିଥାନ୍ତି, କିମ୍ବଦନ୍ତୀ ତାକୁ ଅନ୍ୟ ଜଣଙ୍କ ଠାରେ ଆରୋପ କରି-ଦିଏ । ଐତିହାସିକ ରାଜା ଜନମେଜୟ ବିରୂପା କୂଳରେ ଯେଉଁ ଯଜ୍ଞ କରିଥିଲେ ଓ ଯେଉଁ ନଗର ସ୍ଥାପନ କରିଥିଲେ, କିମ୍ବଦନ୍ତୀ ତାହା ପୌରାଣିକ ରାଜା ଜନମେଜୟଙ୍କ ଠାରେ ଆରୋପ କରିଛି । ଉଭୟ ରାଜାଙ୍କ ନାମ ଏକ ହୋଇଥିବାରୁ ଏପରି ଭ୍ରମ ଅତ୍ୟନ୍ତ ସ୍ୱାଭାବିକ ହୋଇଛି ।

ଯାଜପୁର କଟକର ଆଲୋଚନାରେ ଦେଖାଯାଇଛି ଯେ ଏଠାରେ ଯଯାତିକେଶରୀ ଯଜ୍ଞ କରିଥିବାରୁ ଏହା ଯଜ୍ଞପୁର ବା ଯାଗପୁର ନାମରେ ମଧ୍ୟ ଅଭିହିତ ହୋଇଥିଲା । ଏହି ଆଲୋଚନାରୁ ଦେଖାଯାଇଛି ଯେ ବିରୂପାକୂଳସ୍ଥ ଚଉଦ୍ୱାରରେ ଜନମେଜୟ ଯଜ୍ଞ କରିଥିବାରୁ ଏହାର ନାମ ଯଜନନଗର ଥିଲା । ଏଣୁ ପରବର୍ତ୍ତୀ କାଳରେ ଯଜ୍ଞପୁର ଓ ଯଜନନଗର ଏକ ଓ ଅଭିନ୍ନ ସ୍ଥାନ ବୋଲି ସାଧାରଣଙ୍କ ମନରେ ଭ୍ରମ ଜନ୍ମିବା ଅତ୍ୟନ୍ତ ସ୍ୱାଭାବିକ । ଏପରି ଭ୍ରମ କଟଲୋଟଚରିତାମୃତ ଓ ବିଦଗ୍ଧଚିନ୍ତାମଣିରେ ମଧ୍ୟ ଦେଖାଯାଏ । କିନ୍ତୁ ଏଠାରେ ସ୍ମରଣ ରଖିବା ଉଚିତ ଯେ ଶାରଳାଦାସଙ୍କ ମହାଭାରତ ଏହି ଉଭୟ ଗ୍ରନ୍ଥ ଠାରୁ ବେଶୀ ପ୍ରାଚୀନ । ଶାରଳାମହାଭାରତରେ ଯଜନନଗର ଓ ଯାଜପୁରକୁ ଦୁଇଟି ସ୍ୱତନ୍ତ୍ର ସ୍ଥାନରୂପେ ବର୍ଣ୍ଣନା କରାଯାଇଛି । ଦ୍ରୌପଦୀଙ୍କ ସ୍ୱୟମ୍ବରକୁ ଯେଉଁ ଯେଉଁ ରାଜାମାନେ ଆସିଥିଲେ, ତାହା ବର୍ଣ୍ଣନା କରି କେତିମା କହୁଛି —

ରାଜପୁରନଗ୍ରରାଜା ଏ ଧରଣୀଧର
ସମଦଣ୍ଡ ଯେନ ରାଜେ କଲ ଏ ସଭାର ॥

ଉଲ୍ଲିଖିତ ପଦ୍ୟାଂଶରୁ ଓ ତାଙ୍କ ମହାଭାରତର ଅନ୍ୟାନ୍ୟ କେତେକ ସ୍ଥାନରୁ ପ୍ରମାଣିତ ହୁଏ ଯେ ଶାରଳାଦାସ ରାଜପୁରକୁ ଗୋଟିଏ ସ୍ୱତନ୍ତ୍ର ସ୍ଥାନ ବୋଲି ବର୍ଣ୍ଣନା କରିଛନ୍ତି ।

ଯାଜନ ନଗରର ଧ୍ୱଂସାବଶେଷ ବର୍ତ୍ତମାନ ସୁଦ୍ଧା ରହିଅଛି ସେଥିରୁ ଜଣାଯାଏ ଯେ ପୂର୍ବେ ଏହା ଏକ ସମୃଦ୍ଧିଶାଳୀ ନଗର ଥିଲା । ଏହାର ଚତୁର୍ଦ୍ଦିଗ ବେଷ୍ଟିତ ଦୁର୍ଗ ଅତ୍ୟନ୍ତ ଦୃଢ଼ ଥିଲା ଓ ପରିଖାବେଷ୍ଟିତ ଥିଲା । ଏକ ପାର୍ଶ୍ୱରେ ଶୈଳଶ୍ରେଣୀ ଓ ଅନ୍ୟ ପାର୍ଶ୍ୱରେ ଖରସ୍ରୋତା ଜଳବେଣୀ ଏହାର ରକ୍ଷା ବ୍ୟବସ୍ଥାକୁ ସୁଦୃଢ଼ କରିଥିଲା । କୈଳାସ ତରଫରୁ ଆସିଥିବା କ୍ଷୁଦ୍ର ଗଙ୍ଗା ନଦୀକୁ ବାନ୍ଧି ନଗରର ବ୍ୟବହାର ପାଇଁ ଏଠାରେ ଦୁଇଟି ପ୍ରକାଣ୍ଡ ଜଳାଶୟ ସୃଷ୍ଟି କରାଯାଇଥିଲା । ଏ ଜଳାଶୟ ଦୁଇଟି ବର୍ତ୍ତମାନ ଶୁଖି ଯାଇଛି ଓ ଏ ଯେଉଁ ଯାହା ଜଳାଶୟ ଥିଲା, ତାହା ବର୍ତ୍ତମାନ ଜନବସତିରେ ପରିଣତ ହୋଇଛି । ଚଣ୍ଡଦ୍ୱାରର ଧ୍ୱଂସାବଶେଷ-ମଧ୍ୟରେ ରହିଛି କାପାଳେଶ୍ୱର, ବୈଦ୍ୟେଶ୍ୱର, ଉତ୍ତରେଶ୍ୱର ଇତ୍ୟାଦି ମନ୍ଦିର, ପ୍ରୋଥିତ ନଗରର ସ୍ତୂପ, ପାରାବାଡ଼ି ବା ବଧି (ବୋଧି ?) ନାମକ ପ୍ରାଚୀନ ସ୍ଥାନ ଓ ଇତସ୍ତତଃ ବିକ୍ଷିପ୍ତ ମୂର୍ତ୍ତିମାନ । ଏମାନଙ୍କ ସାହାଯ୍ୟରେ ଏହି ନଗରର ଲୁପ୍ତ ଇତିହାସ ବହୁପରିମାଣରେ ଉଦ୍ଧାର କରାଯାଇ ପାରିବ ।

———

# କଟକ

## (ଅଭିନବ ବାରାଣସୀ କଟକ)

ବାରବାଟୀର ଇତିହାସ ଓଡ଼ିଶାର ଇତିହାସ ସହିତ ଏପରି ଭାବରେ ଜଡ଼ିତ ହୋଇଛି ଯେ ଗୋଟିକୁ ବାଦ ଦେଲେ ଅନ୍ୟଟି ସଂପୂର୍ଣ୍ଣରୂପେ ବୁଝାଯାଏ ନାହିଁ । ଏହି ଦୁର୍ଗ ଓଡ଼ିଶାର ଜାତୀୟ ଜୀବନର କେନ୍ଦ୍ରରୂପେ ବହୁ ଶତବର୍ଷ ରହି ଓଡ଼ିଶାର ଇତିହାସକୁ ନାନା ଭାବରେ ପ୍ରଭାବିତ କରିଛି । କଟକ ସହର ଯେତେବେଳେ ସ୍ଥାପିତ ହେଲା, ଠିକ୍ ସେତେବେଳେ ବାରବାଟୀ ମଧ୍ୟ ନିର୍ମିତ ହୋଇଥିଲା କି ନା ଏ ବିଷୟରେ ସନ୍ଦେହ କରିବାର କାରଣ ରହିଛି । କଟକ ନଗରୀକୁ ନୃପକେଶରୀ ସ୍ଥାପନ କରିଥିଲେ ଓ କାଠଯୋଡ଼ିର ପଥର ବନ୍ଧକୁ ମର୍କତ କେଶରୀ ତିଆରି କରିଥିଲେ ବୋଲି କିମ୍ବଦନ୍ତୀ ରହିଛି । ନୃପକେଶରୀ ଓ ମର୍କତ କେଶରୀଙ୍କ ନାମ ଅନ୍ୟ ଉପାଦାନରୁ ମିଳୁ ନଥିଲେ ମଧ୍ୟ ଏହି କିମ୍ବଦନ୍ତୀକୁ ଭିତ୍ତି-ହୀନ ବୋଲି କୁହାଯିବ ନାହିଁ । ମର୍କତ କେଶରୀ ନାମଟି ମାଦଳା ପାଞ୍ଜିର କୌଣସି କୌଣସି ପୋଥିରେ ମର୍କଟକେଶରୀ ରୂପେ ଦେଖାଯାଏ । ମର୍କତ ବୋଲି କୌଣସି ଶବ୍ଦ ନାହିଁ ; ଶବ୍ଦଟିର ପ୍ରକୃତ ରୂପ ହେଉଛି ମରକତ । ଏଣୁ କଳିଙ୍ଗର କୌଣସି ରାଜା ମର୍କତ ବା ମର୍କଟ ନାମ ବହନ କରିଥିବା କଥା ସମ୍ଭାବନା-ଭିତରକୁ ଆସୁନାହିଁ । ମାଦଳା ପାଞ୍ଜିରେ ଥିବା ଅତି ପୁରାତନ ରାଜାମାନଙ୍କ ନାମମାନ ବହୁ ସ୍ଥଳରେ ବିକୃତ ହୋଇଛି । ମର୍କତ ବା ମର୍କଟ ନାମ ମଧ୍ୟ ଏହିପରି ଗୋଟିଏ ବିକୃତ ନାମ ବୋଲି

ଧରାଗଲେ ଅସଙ୍ଗତ ହେବ ନାହିଁ । ଭୌମ ରାଜାମାନଙ୍କ ତାମ୍ର-ଶାସନ ମାନଙ୍କରୁ ଜଣାଯାଏ ଯେ ସେମାନଙ୍କ ଜଣେ ଆଦପୁରୁଷଙ୍କ ନାମ ଥିଲା ଉନ୍ମତ୍ତ କେଶରୀ । ସଂସ୍କୃତ ଉନ୍ମତ୍ତ ଶବ୍ଦର ପ୍ରାକୃତ ରୂପ ହେଉଛି ଉନ୍ମଟ । ଏହି ଉନ୍ମଟ କେଶରୀ ନାମଟି ଜନଶ୍ରୁତିରେ ଚାଲି ଆସିବାବେଳେ ମର୍କଟ କେଶରୀରେ ପରିଣତ ହୋଇଥିବା ଅତ୍ୟନ୍ତ ସମ୍ଭବ ।

ଉନ୍ମଟ କେଶରୀ ଅଷ୍ଟମ ଶତାବ୍ଦୀରେ ରାଜତ୍ୱ କରିଥିଲେ । ଅତଏବ ଅଷ୍ଟମ ଶତାବ୍ଦୀ ବେଳକୁ କମ୍ବଦନ୍ତୀ ଅନୁସାରେ କଟକ ସହର ସ୍ଥାପିତ ହୋଇ ସାରିଥିଲା । କଟକ ସହରରେ ଥିବା ପ୍ରାଚୀନ କଳା ଓ ସ୍ଥାପତ୍ୟ ମଧ୍ୟ ଏହି ସିଦ୍ଧାନ୍ତକୁ ବହୁ ପରିମାଣରେ ସମର୍ଥନ କରିଥାଏ । କଟକ ସହରରେ ବର୍ତ୍ତମାନ କୌଣସି ଅତି ପ୍ରାଚୀନ ମନ୍ଦିର ନାହିଁ ; କିନ୍ତୁ କେତେକ ମୂର୍ତ୍ତି ଓ କେତେକ ପ୍ରାଚୀନ ମନ୍ଦିରର ଭଗ୍ନାବଶେଷ ଇତସ୍ତତଃ ବିକ୍ଷିପ୍ତ ଭାବରେ ପଡ଼ି ଥିବାର ଦେଖାଯାଏ । ଏମାନଙ୍କ ମଧ୍ୟରୁ ଯେଉଁଗୁଡ଼ିକ ସର୍ବପ୍ରାଚୀନ ସେଗୁଡ଼ିକରେ ଭୌମ ରାଜତ୍ୱର କଳାର ବୈଶିଷ୍ଟ୍ୟ ସ୍ପଷ୍ଟଭାବରେ ଦେଖାଯାଏ । ଅତଏବ ଭୌମରାଜତ୍ୱ କାଳରେ କଟକ ସହର ସ୍ଥାପିତ ହୋଇଥିବାର ସିଦ୍ଧାନ୍ତ ଅସଙ୍ଗତ ବା ଅମୂଳକ ନୁହେଁ ।

ମାଦଳାପାଞ୍ଜିରେ ବର୍ଣ୍ଣିତ ଅଛି ଯେ ଗଙ୍ଗବଂଶର ପ୍ରତିଷ୍ଠାତା ଚୋଡ଼ଗଙ୍ଗଦେବ ଓଡ଼ିଶା ଦଖଲ କରିବା ସଙ୍ଗେ ସଙ୍ଗେ ଯେଉଁ ପଞ୍ଚ କଟକ ଅଧିକାର କରିଥିଲେ, ସେଥି ମଧ୍ୟରେ ବାରାଣସୀ କଟକ ଥିଲା ଅନ୍ୟତମ । ୧୮୨୨ ଖ୍ରୀଷ୍ଟାବ୍ଦରେ ଷ୍ଟର୍ଲିଂ ସାହେବ ମାଦଳାପାଞ୍ଜିର ଯେଉଁ ପୋଥି ବ୍ୟବହାର କରିଥିଲେ ସେଥିରେ

ଏହି କଟକ ବା ଦୁର୍ଗର ନାମ ଥିଲା ବରାଣସୀ. କିନ୍ତୁ ପରବର୍ତ୍ତୀ କାଳରେ ପାଞ୍ଜିର ଅନ୍ୟାନ୍ୟ ପୋଥିରେ ଏହି ନାମଟି ବାଣରସି ରୂପେ ଦେଖାଯାଏ । ଏଥିରୁ ଏହାହିଁ ପ୍ରତିପାଦିତ ହୁଏ ଯେ ପ୍ରକୃତ ନାମ ବାରାଣସୀରୁ ବରାଣସି ଓ ବାଣରସି ଏହି ଦୁଇଟି ଅପଭ୍ରଂଶ ନାମ ସୃଷ୍ଟି ହୋଇଥିଲା । ଏଥିମଧ୍ୟରୁ ବରାଣସୀ ନାମଟି କାଳକ୍ରମେ ବଡ଼ାସିରେ ପରିଣତ ହେଲା ଓ ବାଣରସୀ ନାମଟି ମୁସଲମାନ ଐତିହାସିକମାନଙ୍କ ବିବରଣୀରେ 'ବେନାରସ' ରୂପ ଧାରଣ କଲା ।

ଯେ ଯାହାହେଉ, ମାଦଳାପାଞ୍ଜିର ବିବରଣୀକୁ ଯଦି ବିଶ୍ୱାସ କରାଯାଏ, ତାହାହେଲେ ସ୍ୱୀକାର କରିବାକୁ ହେବ ଯେ ୧୧୧୨ ଖ୍ରୀଷ୍ଟାବ୍ଦରେ ଚୋଡ଼ଗଙ୍ଗ ଦେବ ଓଡ଼ିଶା ଦଖଲ କରିବାବେଳେ ବାରାଣସୀ ଦୁର୍ଗ ଅବସ୍ଥିତ ଥିଲା । ଅତଏବ ଏହି ଦୁର୍ଗ ଗଙ୍ଗ-ରାଜତ୍ୱ ପୂର୍ବରୁ ଅର୍ଥାତ୍ ସୋମବଂଶୀ-କେଶରୀ ରାଜାମାନଙ୍କ ଅମଳରେ ନିର୍ମିତ ହୋଇଥିବ । ଗଙ୍ଗବଂଶ ପୂର୍ବରୁ ଯେ ବାରାଣସୀ ଦୁର୍ଗ ଅବସ୍ଥିତ ଥିଲା, ଏହା କେବଳ ମାଦଳାପାଞ୍ଜିର କିମ୍ବଦନ୍ତୀରୁ ନୁହେଁ, ଗଙ୍ଗ ତାମ୍ରଶାସନରୁ ମଧ୍ୟ ପ୍ରମାଣିତ ହୁଏ । କଟକ ନିକଟସ୍ଥ ନଗରୀ ଗ୍ରାମରୁ ମିଳିଥିବା ତାମ୍ରଶାସନଟିରେ ଅନଙ୍ଗ ଭୀମଦେବ ୧୧୫୧ ଶକାବ୍ଦ ବା ୧୨୩୦ ଖ୍ରୀଷ୍ଟାବ୍ଦରେ ଅଭିନବ ବାରାଣସୀ କଟକରୁ ଭୂମିଦାନ କରିଥିବା କଥା ଲେଖାଅଛି । ଏଥିରୁ ପ୍ରମାଣିତ ହୁଏ ଯେ ୧୨୨୯ ଖ୍ରୀଷ୍ଟାବ୍ଦ ବେଳକୁ ଅନଙ୍ଗ ଭୀମଦେବଙ୍କ ଅମଳରେ ବାରାଣସୀ କଟକ ଅବସ୍ଥିତ ଥିଲା । ମାଦଳାପାଞ୍ଜିରେ ବର୍ଣ୍ଣିତ ଅଛି ଯେ ଗଙ୍ଗବଂଶର ଅନଙ୍ଗ ଭୀମଦେବ ବାରବାଟୀ ଦୁର୍ଗ ନିର୍ମାଣ କରି ବାରାଣସୀ କଟକ ସ୍ଥାପନ କଲେ । ମାଦଳା ପାଞ୍ଜିରେ ପୁଣି ଲେଖା

ଅଛି ଯେ ଗଙ୍ଗବଂଶର ପ୍ରଥମରାଜା ଚୋଡ଼ଗଙ୍ଗଦେବ ବାରାଣସୀ କଟକ ଦଖଲ କରିଥିଲେ । ଏହା ପରସ୍ପର ବିରୋଧୀମତ ; ଏଣୁ ଗ୍ରହଣୀୟ ନୁହେ । ଅନଙ୍ଗ ଭୀମଦେବ ଯେ ବାରବାଟୀ ଦୁର୍ଗ ସ୍ଥାପନ କରିଥିଲେ, ଏହା ସତ୍ୟ, କିନ୍ତୁ ବାରାଣସୀ ଦୁର୍ଗ ଏହାଙ୍କ ବହୁପୂର୍ବରୁ ଅବସ୍ଥିତ ଥିଲା ଓ ଏହାଙ୍କ ପୂର୍ବପୁରୁଷ ଚୋଡ଼ଗଙ୍ଗ ଦେବଙ୍କ ଦ୍ୱାରା ଅଧିକୃତ ହୋଇଥିଲା ।

କଟକରେ ବର୍ତ୍ତମାନ ଦୁଇଟି ଦୁର୍ଗର ଧ୍ୱଂସାବଶେଷ ଦେଖାଯାଏ । ଏହା ମଧ୍ୟରୁ ଗୋଟିକର ନାମ ଥିଲା ବାରାଣସୀ କଟକ ଓ ଅନ୍ୟଟିର ନାମ ଥିଲା ବାରବାଟୀ କଟକ । ବାରାଣସୀ କଟକ ପ୍ରାଚୀନତର ଓ ବର୍ତ୍ତମାନ ଭୂ ଗର୍ଭରେ ଛଡ଼ା ବାହାରେ ମଧ ଏହାର କେତେକ ଭଗ୍ନାବଶେଷ ଅଛି । ମହାନଦୀ ଓ କାଠ ଯୋଡ଼ିର ମଧ୍ୟବର୍ତ୍ତୀ ଏହି ତ୍ରିକୋଣାକାର ସ୍ଥାନଟିରେ ସାମରିକ ନିରାପତ୍ତା ଦୃଷ୍ଟିରୁ ଦୁଇଟି ଦୁର୍ଗ ତିଆରି ହେବାପରେ ସ୍ଥାନଟି ପ୍ରାୟ ଦୁଇଭାଗରେ ବିଭକ୍ତ ହୋଇଗଲା । ବାରାଣସୀ ଦୁର୍ଗ ଅଞ୍ଚଳ ବାରାଣସି କଟକ ବା ଖାଲ୍ ବାରାଣସି ନାମରେ ଅଭିହିତ ହେଲା ଓ ବାରବାଟୀ ଦୁର୍ଗ ଅଞ୍ଚଳ ବାରବାଟୀ କଟକ ବା ଖାଲ୍ କଟକ ନାମରେ ଅଭିହିତ ହେବାକୁ ଲାଗିଲା । ପ୍ରାଚୀନ ଦୁର୍ଗ ବାରାଣସୀ ଓ ନୂତନ ଦୁର୍ଗ ବାରବାଟୀ ଉଭୟ ବିଦ୍ୟମାନ ରହି ଅନେକ ବର୍ଷ ପର୍ଯ୍ୟନ୍ତ ଉଭୟେ କଟକର ଭାର୍ଯ୍ୟ କରୁଥିବା ଖୁବ୍ ସମ୍ଭବ ; କିନ୍ତୁ କାଳକ୍ରମେ ପ୍ରାଚୀନ ଦୁର୍ଗ ବାରାଣସୀ ଧ୍ୱଂସ ପାଇଲା ଓ ବାରବାଟୀ ଦୁର୍ଗହିଁ ପ୍ରାଧାନ୍ୟ ଲାଭ କଲା ।

ଏହି ଆଲୋଚନାରୁ ଦେଖାଯିବ ଯେ ବାରାଣସୀ ଦୁର୍ଗ କେଶରୀ ସୋମବଂଶୀ ରାଜାମାନଙ୍କ ଅମଳରେ ସ୍ଥାପିତ ହୋଇଥିଲା । କେଉଁ

ରାଜା ଏହାକୁ ସ୍ଥାପନ କରିଥିଲେ, ତାହା କହିବା ସମ୍ଭବ ନୁହେଁ; କିନ୍ତୁ ଏହାର ନାମ କାହିଁକି ଅଭିନବ ବାରାଣସୀ କଟକ ହେଲା, ତାହା କହିବା ସମ୍ଭବ । କଟକ ସହରରେ ବିଶ୍ୱେଶ୍ୱର ମହାଦେବ ବର୍ତ୍ତମାନ ସୁଦ୍ଧା ଅଛନ୍ତି ଓ ଉତ୍ତର ଭାରତରେ ବାରାଣସୀ (ବେନାରସ) ସହରରେ ବିଶ୍ୱନାଥ ମହାଦେବ ଅଛନ୍ତି । ବିଶ୍ୱେଶ୍ୱର ଓ ବିଶ୍ୱନାଥର ଅର୍ଥ ଏକ । ଅତଏବ ବିଶ୍ୱେଶ୍ୱର ମହାଦେବ କଟକର ଅଧିପତି ଦେବତା ଥିବାରୁ ଏହି ସ୍ଥାନକୁ ମଧ୍ୟ ବାରାଣସୀ ବୋଲି କୁହାଗଲା ଓ ଉତ୍ତର ଭାରତର ବାରାଣସୀ ଠାରୁ ଏହାକୁ ପୃଥକ୍ କରିବାପାଇଁ ଏହା ପୂର୍ବରେ ଅଭିନବ ବା ନୂତନ ଶବ୍ଦଟି ଯୋଡ଼ି ଦିଆଗଲା । ଏହି ତ୍ରିକୋଣାକାର ସ୍ଥାନଟିରେ ଦୁର୍ଗ ବା କଟକ ସ୍ଥାପିତ ହେବା ପରେ ଏହାର ସମ୍ପୂର୍ଣ୍ଣ ନାମଟି ହେଲା ଅଭିନବ ବାରାଣସୀ କଟକ । କିନ୍ତୁ ଏତେ ବଡ଼ ନାମଟାକୁ ସୁବିଧାଜନକଭାବରେ କହିବା ଲୋକମାନଙ୍କ ପକ୍ଷରେ ସହଜ ହେଲା ନାହିଁ । ଏଣୁ ସେମାନେ ଏହାକୁ ସଂକ୍ଷେପରେ ବାରାଣସୀ, ବରାଣସୀ ବା ବାଣାରସୀ ବୋଲି କହିବାକୁ ଲାଗିଲେ । କଟକ ସହରର ଗୋଟିଏ ଅଂଶ ବର୍ତ୍ତମାନ ସୁଦ୍ଧା ବଡ଼ାଣସୀ ନାମରେ ଅଭିହିତ ।

ଅନେକ କୁହନ୍ତି ଯେ ୧୨·୯ ଖ୍ରୀଷ୍ଟାବ୍ଦରେ ଅନଙ୍ଗଭୀମ ଦେବ ଅଭିନବ ବାରାଣସୀ କଟକରୁ ଭୂମିଦାନ କରିଥିଲେ । ଏଣୁ ଏହି ତାରିଖର ପରେହିଁ ସେ ବାରବାଟୀ ଦୁର୍ଗ ନିର୍ମାଣ କରିଥିବା ଖୁବ୍ ସମ୍ଭବ । ପ୍ରାରମ୍ଭିକ ଅବସ୍ଥାରେ ବାରବାଟୀର ଆକାରପ୍ରକାର କିପରି ଥିଲା, ତାହା କହିବା ସମ୍ଭବ ନୁହେଁ । ଗଙ୍ଗବଂଶପରେ ସୂର୍ଯ୍ୟବଂଶ, ଭୋଇବଂଶ, ଚାଲୁକ୍ୟ ବଂଶ, ପଠାଣ, ମୋଗଲ, ମହଟ୍ଟା ଓ ଇଂରାଜମାନେ କ୍ରମାନ୍ୱୟରେ ଓଡ଼ିଶାରେ ରାଜତ୍ୱ କରିଥିଲେ ।

ଏହି ପ୍ରତ୍ୟେକ ରାଜବଂଶ ଅମଳରେ ବାରବାଟୀର ଆକାର ପ୍ରକାର କେତେକ ପରିମାଣରେ ବଦଳିଥିବା ଖୁବ୍ ସମ୍ଭବ । ସୂର୍ଯ୍ୟବଂଶର ପ୍ରତିଷ୍ଠାତା କପିଳେନ୍ଦ୍ର ଦେବ ବାରବାଟୀରେହିଁ ଅବସ୍ଥାନ କରୁଥିଲେ । ତାଙ୍କ ମୃତ୍ୟୁପରେ ସିଂହାସନ ପାଇଁ ତାଙ୍କ ପୁଅମାନଙ୍କ ମଧ୍ୟରେ ଲଢ଼େଇ ଲାଗିଲା । ବଡଭାଇଙ୍କୁ ବାଦ୍ ଦେଇ ସାନଭାଇ ପୁରୁଷୋତ୍ତମ ଦେବ ରାଜା ହେବାରୁ ବଡ଼ଭାଇ ହମ୍ବୀର ପୁରୁଷୋତ୍ତମ ଦେବଙ୍କୁ ବାରବାଟୀରେ ଅବରୋଧ କଲେ ; କିନ୍ତୁ ଶେଷରେ ହମ୍ବୀର ନିଜେ ପରାସ୍ତ ହେଲେ । ଗୋବିନ୍ଦ ବିଦ୍ୟାଧରଙ୍କୁ ପରାସ୍ତ କରିବା ପରେ ଓଡ଼ିଶାରେ ଶେଷ ସ୍ୱାଧୀନ ରାଜା ମୁକୁନ୍ଦଦେବ ମଧ୍ୟ ବାରବାଟୀ ଦଖଲ କରିଥିଲେ ; କିନ୍ତୁ ସେଠାରେ ବେଶୀ କାଳ ଅବସ୍ଥାନ କରିପାରି ନ ଥିଲେ । ତାଙ୍କର ସମସାମୟିକ ବଙ୍ଗର ନବାବ ସୁଲେମାନଙ୍କ ସେନାପତି କଳାପାହାଡ଼ଙ୍କ ଦ୍ୱାରା ପରାସ୍ତ ହୋଇ ସେ ୧୫୬୮ ଖ୍ରୀଷ୍ଟାବ୍ଦରେ ନିହତ ହେଲେ । ଏହା ପରେ ବାରବାଟୀ ମୁସଲମାନମାନଙ୍କ ହାତରେ ପଡ଼ିଲା ଓ ବହୁ ଯୁଦ୍ଧ ବିଗ୍ରହର ଲୀଳାସ୍ଥଳୀ ହେଲା । ବଙ୍ଗନବାବ ଆଲିବର୍ଦ୍ଦୀ ଖାଁଙ୍କ ଦ୍ୱାରା ନିଯୁକ୍ତ ଓଡ଼ିଶାର ଶାସନକର୍ତ୍ତା ସୌଲତ୍ ଜଙ୍ଗଙ୍କ ବିରୁଦ୍ଧରେ କଟକରେ ଗୋଟିଏ ପ୍ରକାଣ୍ଡ ବିଦ୍ରୋହ ହେବାରୁ ସ୍ୱୟଂ ଆଲିବର୍ଦ୍ଦୀ ଖାଁ ବଙ୍ଗରୁ ଆସି ଓଡ଼ିଶା ଦଖଲ କରିଥିଲେ ଓ ଏହି ବାରବାଟୀରେ ଅବସ୍ଥାନ କରିଥିଲେ । ୧୭୫୧ ଖ୍ରୀଷ୍ଟାବ୍ଦରେ ମହାରାଷ୍ଟ୍ରମାନେ ସନ୍ଧିସୂତ୍ରରେ ଆଲିବର୍ଦ୍ଦୀ ଖାଁଙ୍କ ଠାରୁ ଓଡ଼ିଶାରାଜ୍ୟ ପାଇଲେ ଓ କଟକକୁ ରାଜଧାନୀରୂପେ ବ୍ୟବହାର କରିବା ସଙ୍ଗେ ସଙ୍ଗେ ବାରବାଟୀକୁ ପ୍ରଧାନ ଦୁର୍ଗରୂପେ ମଧ୍ୟ ବ୍ୟବହାର କଲେ । ଏଣୁ ଦୁଇଶହ ବର୍ଷରୁ କିଛି ଅଧିକ କାଳ ପରେ ବାରବାଟୀ ପୁଣି ହିନ୍ଦୁମାନଙ୍କ ଅଧୀନକୁ ଆସିଲା । ମାତ୍ର ମୁସଲମାନମାନଙ୍କ ଅମଳରେ ଦୁର୍ଗ ମଧ୍ୟରେ ଯେଉଁ

ମସ୍‌ଜିଦ୍‌ଟି ନିର୍ମିତ ହୋଇଥିଲା । ତାକୁ ମହର୍ଟ୍ଟାମାନେ ଧ୍ୱଂସ କଲେ ନାହିଁ । ଏହା ବର୍ତ୍ତମାନ ସୁଦ୍ଧା ରହିଛି ।

ହାରକୋର୍ଟ ସାହେବଙ୍କ ନେତୃତ୍ୱରେ ଇଂରେଜ ସୈନ୍ୟ ୧୮୦୩ ଖ୍ରୀଷ୍ଟାବ୍ଦରେ ବାରବାଟୀ ଦୁର୍ଗ ଦଖଲ କଲେ । ଲେଫ୍‌ଟେନାଣ୍ଟ କ୍ଲେଟନ୍‌ ଏହି ଦୁର୍ଗ ଆକ୍ରମଣରେ ଅଗ୍ରଣୀ ହୋଇଥିଲେ । ଦୁର୍ଗସ୍ଥିତ ମହର୍ଟ୍ଟା ସୈନ୍ୟ ଇଂରେଜମାନଙ୍କୁ ସାମାନ୍ୟ ବାଧା ଦେଇଥିଲେ ମଧ୍ୟ, ସେମାନେ ବଡ଼ ଧରଣର ଯୁଦ୍ଧ କରିଥିବାର ପ୍ରମାଣ ମିଳେ ନାହିଁ । ଇଂରେଜମାନଙ୍କ କୂଟନୀତି ସେମାନଙ୍କୁ ବାରବାଟୀ ଦଖଲ କରିବାରେ ସାହାଯ୍ୟ କରିଥିଲା ବୋଲି ମନେ ହୁଏ । ବନୁଜୀ ପଣ୍ଡିତ, ହରବଂଶ ରାୟ, ମୋରୋ ପଣ୍ଡିତ ଓ ବାଲାଜୀ କୁଅଁର ପ୍ରଭୃତି ଉଚ୍ଚ ମହର୍ଟ୍ଟା କର୍ମଚାରୀମାନେ ଦୁର୍ଗରକ୍ଷା କରିବାରେ ସେ ବିଶେଷ ତତ୍ପର ଥିଲେ, ଏପରି ପ୍ରମାଣ ଇଂରେଜମାନଙ୍କ ନଥି ପତ୍ରରୁ ମିଳେ ନାହିଁ ।

ଇଂରେଜମାନଙ୍କ ଅମଳରେ କଟକ ଓଡ଼ିଶାର ରାଜଧାନୀ ହୋଇ ରହିଲା ; ମାତ୍ର ବାରବାଟୀ ଆଉ ପ୍ରଧାନ ଦୁର୍ଗ ହୋଇ ରହିଲା ନାହିଁ । ବରଂ ଇଂରେଜମାନଙ୍କ ଅମଳରେ ଏହି ଦୁର୍ଗର ବହୁ ପ୍ରସ୍ତର ଖଣ୍ଡ ପି: ଡବ୍‌ଲ୍ୟୁ ଡି ଦ୍ୱାରା ଅପହୃତ ହୋଇ ଭିନ୍ନ କାର୍ଯ୍ୟରେ ନିୟୋଜିତ ହେଲା । ଫାଲ୍‌ସ୍‌ ପଏଣ୍ଟର ବତିଘର, ରେଲ୍‌ ଷ୍ଟେସନ୍‌ର ରାସ୍ତା ଓ ଗୋଟିଏ ଡାକ୍ତରଖାନା ବାରବାଟୀର ପ୍ରସ୍ତର ଖଣ୍ଡରେ ନିର୍ମିତ ହୋଇଥିବା କଥା ହ୍ୟୁନ୍‌ଟର ସାହେବ ତାଙ୍କ ପୁସ୍ତକରେ ଲେଖିଯାଇଛନ୍ତି ।

ଅବୁଲ୍‌ ଫାଜଲ୍, ମେ.ଟି, ଷ୍ଟାର୍ଲିଂ ଓ ହାରକୋର୍ଟ ଇତ୍ୟାଦିଙ୍କ ଲେଖାରୁ ବାରବାଟୀର ଆକାର ପ୍ରକାର ସମ୍ବନ୍ଧରେ

କେତେକ କଥା ଜଣାଯାଏ । ବାରବାଟୀରେ ଗୋଟିଏ ନବତଳ ପ୍ରାସାଦ ଥିଲା ବୋଲି ଅବୁଲ୍ ଫାଜଲ୍ ଲେଖି ଯାଇଛନ୍ତି । ବାରବାଟୀ ମଧ୍ୟରେ ବର୍ତ୍ତମାନ ଯେଉଁ ବଡ଼ ମୃତ୍ତିକାସ୍ତୂପ ଦେଖାଯାଏ, ତାହା ଏହି ନବତଳ ପ୍ରାସାଦର ଭଗ୍ନାବଶେଷ ହୋଇଥିବା ଅତ୍ୟନ୍ତ ସମ୍ଭବ । ଏହି ସ୍ତୂପଟିକୁ ଦେଖିଲେ ଅନୁମିତ ହୁଏ ଯେ ନବତଳ ପ୍ରାସାଦର କେତେକାଂଶ ମୃତ୍ତିକା ଭିତରେ ଅକ୍ଷୁଣ୍ଣ ରହିଛି ଓ ଖୋଦନଦ୍ୱାରା ତାର ଆକାର ପ୍ରକାର ଜଣାଯିବାର ସମ୍ଭାବନା ରହିଛି । ଲର୍ଡ କ୍ଲାଇବ୍ ଦ୍ୱାରା ପ୍ରେରିତ ହୋଇ ମୋଟି ସାହେବ କଟକ ମଧ୍ୟଦେଇ ସମ୍ବଲପୁର ଯାଇଥିଲେ ଓ ସେଠାରୁ ଫେରିଥିଲେ । ସେ ଯେତେବେଳେ ବାରବାଟୀ ଦେଖିଥିଲେ । ସେତେବେଳେ ଦୁର୍ଗଟି ପ୍ରାୟ ଅକ୍ଷୁଣ୍ଣ ଅବସ୍ଥାରେ ଥିଲା ଓ ମୋଟିଙ୍କ ପରି ବୈଦେଶିକ ଭ୍ରମଣକାରୀଙ୍କୁ ତାହା ଇଂଲେଣ୍ଡ ରାଜାଙ୍କ ଉଇଣ୍ଡସର ଦୁର୍ଗ ପରି ଦେଖାଯାଉ ଥିଲା । ହାଣ୍ଟେଜାଟ ସାହେବଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ ବାରବାଟୀରେ ଥିବା ପରିଖାର ପ୍ରସ୍ଥ ଥିଲା ୬୫ ଫୁଟ ଓ ଏଥିରେ ୧୦ ଫୁଟ ଗଭୀର ଜଳ ରହୁ ଥିଲା । ଏହି ପରିଖା ଉପରେ ଗୋଟିଏ ସାମାନ୍ୟ ଚୌଡ଼ାର ପୋଲ ଥିଲା ଓ ଏହି ପୋଲ୍ ଉପରେ ଗଲେ ପ୍ରଧାନ ଫାଟକରେ ପହୁଞ୍ଚିବାକୁ ହେଉଥିଲା ।



# ଶାରଙ୍ଗଗଡ଼

(ଚୁଡ଼ଙ୍ଗ କଟକ)

କଟକ ସହର ଠାରୁ ୯ ମାଇଲ ଦୂରରେ ଅବସ୍ଥିତ ବାରଙ୍ଗ-ରେଲ୍ ଷ୍ଟେସନର ନିକଟବର୍ତ୍ତୀ ନିବିଡ଼ଜଙ୍ଗଲମଧ୍ୟରେ ଶାରଙ୍ଗଗଡର ଭଗ୍ନାବଶେଷ ବିଦ୍ୟମାନ ଅଛି । ଏହି ଦୁର୍ଗଟିର ଦୁଇଟି ସୁଦୃଢ଼ ପ୍ରାଚୀର ଥିଲା । ଉତ୍ତର ପଟରେ ବାରଙ୍ଗ ନାଳଠାରୁ ପୂର୍ବରୁ ପଶ୍ଚିମକୁ ବିସ୍ତୃତ ହୋଇ ପ୍ରାୟ ୨ ମାଇଲ ଲମ୍ବରେ ଓ ପ୍ରାୟ ୨୫ ଫୁଟ ଚୌଡ଼ାରେ ଏହି ଦୁର୍ଗର ଗୋଟିଏ ବହିଃପ୍ରାଚୀର ଥିଲା । ୧୯୦୭-୮ ମସିହାରେ କାଠଯୋଡ଼ି ରେଳ ପୋଲ ନିକଟବର୍ତ୍ତୀ କାଠଯୋଡ଼ି ନଦୀ ମଧ୍ୟରେ ଯେଉଁ ବନ୍ଧ ନିର୍ମିତ ହେଲା । ତାହା ଏହି ବହିଃପ୍ରାଚୀରର ପ୍ରସ୍ତରଖଣ୍ଡରେହିଁ ନିର୍ମିତ ହୋଇଛି । ବହିଃପ୍ରାଚୀରର ଧାରେ ଧାରେ ଗୋଟିଏ ଜଳପୂର୍ଣ୍ଣ ପରିଖା ଗୃଲିଥିଲା ଓ ଏହାର ମଧ୍ୟବର୍ତ୍ତୀ ସ୍ଥାନରେ ଗୋଟିଏ ବିଚିତ୍ର କୌଶଳପୂର୍ଣ୍ଣ ଗୁପ୍ତଦ୍ୱାର ବା ସୁଡ଼ଙ୍ଗ ଥିଲା । ବାହାର ପ୍ରାଚୀରଠାରୁ ବହୁଦୂରରେ ନିବିଡ଼ ଅରଣ୍ୟ ମଧ୍ୟରେ ପ୍ରକୃତ ଦୁର୍ଗଟି ଅବସ୍ଥିତ ଥିଲା । ବର୍ତ୍ତମାନ ସେଠାରେ ଭିତର ପ୍ରାଚୀରର, ସୈନ୍ୟମାନଙ୍କ ବାସଗୃହର ଓ କୂପ ଇତ୍ୟାଦିର ଭଗ୍ନାବଶେଷ ଦେଖାଯାଏ । ସୈନ୍ୟମାନଙ୍କ ପାଇଁ ଯେଉଁ ଶସ୍ୟାଗାର ଥିଲା, ତାହା ଧ୍ୱଂସ ପାଇଛି । କିନ୍ତୁ ଶସ୍ୟାଗାରରେ ଗଚ୍ଛିତ ଥିବା ତଣ୍ଡୁଳ ବର୍ତ୍ତମାନ ସୁଦ୍ଧା ଅର୍ଦ୍ଧ-ମୃତ୍ତିକାକାରରେ ଦେଖାଯାଏ ।

ଏହି ତନ୍ତ୍ରରୁ କେତେକ ଓଡ଼ିଶା ମ୍ୟୁଜିୟମ୍‌ରେ ରକ୍ଷିତ ହୋଇଛି । ତା ଛଡ଼ା ବାହାର ପ୍ରାଚୀର ନିକଟରୁ ମିଳିଥିବା ଟୋଟିଏ ପାକଡ଼ା ମଠରର ଗୋଲ ମଧ୍ୟ ମ୍ୟୁଜିୟମ୍‌ରେ ରଖାଯାଇଛି । କୁଆଖାଇ ନଦୀ, ବାରଙ୍ଗନାଳ, କୃତ୍ରିମ ପରିଖା, ବାହାର ଓ ଭିତର ପ୍ରାଚୀର, ଅରଣ୍ୟ, ଅନୁଚ୍ଚ ପର୍ବତ ଓ ବିସ୍ତୀର୍ଣ୍ଣ ହ୍ରଦ ଏ ସମସ୍ତ ସମନ୍ୱୟରେ ଦୁର୍ଗର ରକ୍ଷା ବ୍ୟବସ୍ଥାକୁ ଅତ୍ୟନ୍ତ ଦୃଢ଼ କରିଥିଲା । ଏହି ସୁଦୃଢ଼ ଦୁର୍ଗ ସମ୍ବନ୍ଧରେ ଓଡ଼ିଶାର ଇତିହାସ ଏକାବେଳେ ନୀରବ କହିଲେ ଚଳେ । ଏଣୁ ଏହାର ଅନ୍ଧକାରମୟ ଇତିହାସ ଉପରେ ଏଠାରେ କେତେକ ପରିମାଣରେ ଆଲୋକପାତ କରି ଯାଉଛି ।

ଆଗରୁ କୁହାଯାଇଛି ଯେ ୧୮୨୨ ମସିହାରେ ଷ୍ଟାର୍ଲିଂ ସାହେବ ଯେଉଁ ମାଦଳାପାଞ୍ଜି ସାହାଯ୍ୟରେ ତାଙ୍କ ଓଡ଼ିଶା ଇତିହାସ ଲେଖିଥିଲେ ସେଥିରେ ଲେଖାଥିଲା ଯେ ଓଡ଼ିଶାରେ ଗଙ୍ଗବଂଶର ସ୍ଥାପୟିତା ଚୋଡ଼ଗଙ୍ଗଦେବ ପଞ୍ଚକଟକ ନିର୍ମାଣ କରିଥିଲେ ବା ଅଧିକାର କରିଥିଲେ । ଷ୍ଟାର୍ଲିଂଙ୍କ ପରେ ଅନ୍ୟ ଐତିହାସିକମାନେ ମାଦଳାପାଞ୍ଜିର ଯେଉଁ ଅନ୍ୟାନ୍ୟ କପି ବା ପୋଥି ବ୍ୟବହାର କରିଥିଲେ, ସେ ସମସ୍ତରେ ମଧ୍ୟ ପଞ୍ଚକଟକର ଉଲ୍ଲେଖ ରହିଛି, ମାତ୍ର ପଞ୍ଚକଟକ ମଧ୍ୟରୁ ଯାଜପୁର କଟକ, ଅମରାବତୀ କଟକ, ଚଉଦ୍ୱାର କଟକ ଓ ବାରଣସୀ କଟକର ଉଲ୍ଲେଖ ପ୍ରାୟ ସମସ୍ତ ପୋଥିରେ ରହିଥିଲେ ମଧ୍ୟ ପଞ୍ଚମ କଟକର ନାମଟି କୌଣସି ପୋଥିରେ ଦେଖାଯାଏ ନାହିଁ । ଏହି ପଞ୍ଚମ କଟକର ନାମ କଅଣ ଥିଲା ଓ ଏହା କେଉଁଠାରେ ଅବସ୍ଥିତ ଥିଲା ? ପଞ୍ଚକଟକର ପ୍ରଥମ ଚାରୋଟି କଟକର ପରିସ୍ଥିତି ପର୍ଯ୍ୟବେକ୍ଷଣ କଲେ ଜଣାଯାଏ ଯେ ଏମାନଙ୍କ ମଧ୍ୟରୁ ସମସ୍ତେ ଦୁଇ ନଦୀର ମଧ୍ୟବର୍ତ୍ତୀ ସ୍ଥାନମାନଙ୍କରେହିଁ

ଅବସ୍ଥିତ ଥିଲେ । ଜାଜପୁର କଟକ ବୈତରଣୀ ଓ ବ୍ରାହ୍ମଣୀ-ମଧ୍ୟରେ, ଅମରାବତୀ କଟକ ଓ ଚଉଦ୍ୱାର କଟକ ବ୍ରାହ୍ମଣୀ ଓ ବିରୂପା ମଧ୍ୟରେ ଏବଂ ବାରଣସୀ କଟକ ମହାନଦୀ ଓ କାଠଯୋଡ଼ି-ମଧ୍ୟରେ ଅବସ୍ଥିତ ଥିଲେ । ଏହି ଦୁର୍ଗମାଳାର ଶେଷରେ ପଞ୍ଚମ କଟକଟି ଅବସ୍ଥିତ ହୋଇଥିବା ଖୁବ୍ ସମ୍ଭବ । ଏଣୁ ପଞ୍ଚମ କଟକଟି ଯେ ଶାରଙ୍ଗଗଡ଼ ଥିଲା, ଏପରି ଅନୁମାନ ଅସଙ୍ଗତ ହେବ ନାହିଁ । ଯଦି ପ୍ରମାଣ କରାଯାଏ ଯେ ଶାରଙ୍ଗ ଗଡ଼ର ମୌଳିକ ନାମ ଚୋଡ଼ଙ୍ଗଗଡ଼ ଥିଲା ଓ ତାହା ଚୋଡ଼ଗଙ୍ଗ ଦେବଙ୍କ ନାମରେହିଁ ନାମିତ ହୋଇଥିଲା, ତାହାହେଲେ ଏହି ଅନୁମାନ ଐତିହାସିକ ସତ୍ୟରେ ପରିଣତ ହେବ ଓ ଶାରଙ୍ଗଗଡ଼ ପଞ୍ଚମ କଟକ ଥିଲା ବୋଲି ପ୍ରମାଣିତ ହେବ ।

୧୮୨୨ ମସିହାରେ ଷ୍ଟାର୍ଲିଂ ତାଙ୍କର ଇତିହାସ ଲେଖିବା ପର୍ଯ୍ୟନ୍ତ ଓଡ଼ିଶାରେ କମ୍ବଦନ୍ତୀ ପ୍ରଚଳିତ ଥିଲା ଯେ ଚୋଡ଼ଗଙ୍ଗଦେବ ଶାରଙ୍ଗଗଡ଼କୁ ସ୍ଥାପନ କରିଥିଲେ (ଷ୍ଟାର୍ଲିଂଙ୍କ ଓଡ଼ିଶା ପୃ ୭୧) । ତା'ଛଡ଼ା ଗଞ୍ଜାମରୁ ପ୍ରାପ୍ତ ମାଦଳା ପାଞ୍ଜିର ଅନୁରୂପ ଅନ୍ୟ ଏକ ପାଞ୍ଜିରେ ପାଞ୍ଚଟି ଯାକ କଟକର ନାମ ଦିଆଯାଇଛି । ଏହି ପାଞ୍ଜିଟି ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ମାଦଳାପାଞ୍ଜି ପୁସ୍ତକରେ ପ୍ରକାଶିତ ହୋଇଛି । ଏଥିରେ ଚୋଡ଼ଗଙ୍ଗ ଦେବଙ୍କ ସମ୍ବନ୍ଧରେ ଲେଖାଅଛି ।

"ଚୋଡ଼ଙ୍ଗଦେବ ଭୋଗ କଲେ ୭୦ ବର୍ଷ । ଏ ରାଜା ପ୍ରଥମେ କଟକ କଲେ । ଦୁତୀୟେ ଅମରାବତୀ କଲେ । ତୃତୀୟେ ଚଉଦ୍ୱାର କଲେ । ଚତୁର୍ଥେ ବାରଣସୀ କଟକ କଲେ । ପଞ୍ଚମେ

ଅଙ୍ଗଦେଶ କଲେ । ପଶ୍ଚେ କାଶୀ ଜୟ କଲେ । ଏ ଗଙ୍ଗାଠାରୁ ଗୌତମୀ ପର୍ଯ୍ୟନ୍ତ ଏକଛତ୍ର କଲେ । (ମାଦଳା ପାଞ୍ଜି, ପୃ ୧୦୪)"

କହିବା ବାହୁଲ୍ୟ ଯେ ଏ ପାଞ୍ଜିରେ ପ୍ରଥମ ଗୁଡ଼ିଏ କଟକର ନାମକୁ ସାମାନ୍ୟ ପରିବର୍ତ୍ତିତ ଆକାରରେ ପ୍ରକାଶ କରାଯାଇଛି । ଜାଜପୁର କଟକକୁ କେବଳ କଟକ ବୋଲି କୁହାଯାଇଛି, ଅଭିନବ ଅମରାବତୀ କଟକକୁ ଦ୍ୱିତୀୟ ଅମରାବତୀ ବୋଲି କୁହାଯାଇଛି, ଚଉଦ୍ୱାର କଟକକୁ ଗୃହଦ୍ୱାର ବୋଲି କୁହାଯାଇଛି ଓ ବାରାଣସୀ କଟକକୁ ବାଣାରସୀ କଟକ ବୋଲି କୁହାଯାଇଛି । ଅଙ୍ଗଦେଶ ଓ କାଶୀଜୟ ବୋଲି ଓଡ଼ିଶାରେ ବର୍ତ୍ତମାନ କୌଣସି ସ୍ଥାନ ବା ଦୁର୍ଗ ନାହିଁ । କିନ୍ତୁ ପ୍ରଥମ ଦୁର୍ଗ ଗୁଡ଼ିକ ସହିତ ଏହି ନାମ ଦୁଇଟିକୁ ବିଚାର କଲେ ଜଣାଯାଏ ଯେ ଶାରଙ୍ଗଗଡ଼ ଓ କାଳିଆ-ଗଡ଼କୁହିଁ ପାଞ୍ଜିକାର ବିକୃତ ବା ପ୍ରଚ୍ଛନ୍ନ ଭାବରେ ଅଙ୍ଗଦେଶ ଓ କାଶୀଜୟ ବୋଲି ବର୍ଣ୍ଣନା କରିଛନ୍ତି ।

ଶାରଙ୍ଗଗଡ଼ରୁ ପ୍ରାୟ ୯ ମାଇଲ ଦୂରରେ ଟାଙ୍ଗିଠାରୁ ଖୋର୍ଦ୍ଧା ରାସ୍ତାରେ ଅବସ୍ଥିତ ଭଣ୍ଡାରିଘରିଆ ପାହାଡ଼ର ନିକଟବର୍ତ୍ତୀ ଡାଲୁଆ ଗ୍ରାମ ପାଖର ନିବିଡ଼ ଅରଣ୍ୟରେ କାଳିଆଗଡ଼ ନାମକ ଗୋଟିଏ ପ୍ରକାଣ୍ଡ ଦୁର୍ଗର ଭଗ୍ନାବଶେଷ ଅଦ୍ୟାପି ବିଦ୍ୟମାନ ରହିଛି । ଏହି ଦୁର୍ଗର ପରିଧି ପ୍ରାୟ ୪ ମାଇଲ ଓ ଏହାର ପ୍ରାଚୀର ପ୍ରାୟ ୧୦ ଫୁଟ ଚଉଡ଼ାରେ କଳାପଥରରେ ନିର୍ମିତ । ଦୁର୍ଗ ମଧ୍ୟରେ କେତୋଟି କୂପ ଛଡ଼ା ଜନବସତିର କୌଣସି ଚିହ୍ନ ନାହିଁ । ଏପରିକି ହାଣ୍ଡି କଳସୀର ଖପରା ମଧ୍ୟ ଏଠାରେ ପଡ଼ିନାହିଁ । ଏଥିରୁ ଜଣାଯାଏ ଯେ ଏହି ଦୁର୍ଗ ସୈନ୍ୟମାନଙ୍କ ସ୍ଥାୟୀ ବସତିରୂପେ ବ୍ୟବହୃତ ହେଉ ନଥିଲା । ସ୍ଥାନୀୟ ଲୋକେ

କହନ୍ତି ଯେ ଏହି ଦୁର୍ଗକୁ ତୁଙ୍ଗ ତିଆରି କରିଥିଲେ । ଦୁର୍ଗ ମଧ୍ୟରେ ଗୋଟିଏ ପ୍ରସ୍ତରର ସତୀସ୍ତମ୍ଭ ଅଛି ଓ ତାକୁ ଲୋକମାନେ 'ତୁଙ୍ଗ ଦାବଅଣୀ' ବୋଲି ପୂଜା କରନ୍ତି । ଏଥିରୁ ଏହାହିଁ ସୂଚିତ ହୁଏ ଯେ ତ୍ରୈତୁଙ୍ଗଦେବଙ୍କ କୌଣସି ରକ୍ଷିତା ସ୍ତ୍ରୀ ସତୀ ହୋଇଥିଲେ ଓ ତାଙ୍କର ସ୍ମୃତିସ୍ତମ୍ଭକୁ ଲୋକମାନେ 'ତୁଙ୍ଗ ଦାବଅଣୀ' ବୋଲି ପୂଜା କରୁଛନ୍ତି । ଦକ୍ଷିଣ ଓଡ଼ିଶାରେ ବର୍ତ୍ତମାନ ସୁଦ୍ଧା ରକ୍ଷିତା ସ୍ତ୍ରୀକୁ ଦାବଅଣୀ ବୋଲି କହନ୍ତି । ଏହି ସବୁ ପ୍ରମାଣରୁ ଜଣାଯାଏ ଯେ 'ତ୍ରୈତୁଙ୍ଗ ଦେବ ଏହି ଦୁର୍ଗ ସ୍ଥାପନ କରିଥିଲେ । ଏହାର ମୌଳିକ ନାମ କାଶୀ କ୍ଷେତ୍ର ବା କାଶୀଦୁର୍ଗ ଥିବା ପ୍ରାୟ ନିଶ୍ଚିତ ; କାରଣ ବର୍ତ୍ତମାନ ଏହି ଦୁର୍ଗର ନାମ କାଣିଆଗଡ଼ ହୋଇଛି । ଏହି ଦୁର୍ଗ ଶାରଙ୍ଗଗଡ଼ର ପରିପୂରକ ଦୁର୍ଗରୂପେ କାର୍ଯ୍ୟ କରୁଥିଲା । କୁଆଖାଇ ନଦୀକୁ ଅତିକ୍ରମ କଲାପରେ ଉତ୍ତରପଟରୁ ଆସୁଥିବା ଶତ୍ରୁ ପ୍ରତି ଅନ୍ୟ କୌଣସି ଦୁରତିକ୍ରମଣୀୟ ପ୍ରାକୃତିକ ପ୍ରତିବନ୍ଧକ ନଥିଲା ଓ ଦକ୍ଷିଣରୁ ଆସୁଥିବା ଶତ୍ରୁକୁ ଉତ୍କଳର ରାଜଧାନୀରେ ପହଞ୍ଚିବା ପୂର୍ବରୁ ନଦୀମାନ ଅତିକ୍ରମ କରିବା ପାଇଁ ବାରଙ୍ଗ ନିକଟରେ ସ୍ଥଗିତ ହୋଇ ରହିବାକୁ ପଡୁଥିଲା । ଏହି ହେତୁରୁ ଶାରଙ୍ଗଗଡ଼କୁ ସୁଦୃଢ଼ କରିବା ସଙ୍ଗେ ସଙ୍ଗେ ନିବିଡ଼ ଅରଣ୍ୟରେ ଅନ୍ୟ ଏକ ପରିପୂରକ ଦୁର୍ଗ ନିର୍ମାଣ କରାଯାଇଥିଲା । ଆବଶ୍ୟକ ହେଲେ ସୈନ୍ୟସାମନ୍ତ ନିବିଡ଼ ଅରଣ୍ୟ ମଧ୍ୟରେ ଥିବା ଏହି ଦୁର୍ଗ ଭିତରେ ଲୁକ୍କାୟିତ ହୋଇ ରହୁଥିଲେ ଓ ଶତ୍ରୁଙ୍କୁ ଅତର୍କିତ ଅବସ୍ଥାରେ ଆକ୍ରମଣ କରୁଥିଲେ ।

ଉଲ୍ଲିଖିତ ଆଲୋଚନାରୁ ଜଣାଯିବ ଯେ ତଷ୍ଣାମନ୍ତ୍ରୁ ପ୍ରାପ୍ତ ପାଞ୍ଜୀରେ ଥିବା ଅଙ୍ଗଦେଶ ଓ କାଶୀକ୍ଷେତ୍ର ଶାରଙ୍ଗଗଡ଼ ଓ

କାଟିଆଗଡର ରୂପାନ୍ତରିତ ବା ପ୍ରକୃତ ନାମ ମାତ୍ର । ଏହି ଉକ୍ତ ଦୁର୍ଗକୁ ଗଙ୍ଗବଂଶର ପ୍ରତିଷ୍ଠାତା ଚୋଡ଼ଗଙ୍ଗଦେବ ସ୍ଥାପନ କରିଥିଲେ । ପୂର୍ବୋକ୍ତ ଦୁର୍ଗଟି ସ୍ଥାପୟିତାଙ୍କ ନାମାନୁସାରେ ନାମିତ ହୋଇଥିବାରୁ ଏହା ପଞ୍ଚଦଶ ଶତାବ୍ଦୀ ପର୍ଯ୍ୟନ୍ତ ଚୁଡ଼ଙ୍ଗଗଡ ବା କଟକ ନାମରେ ଅଭିହିତ ହେଉଥିଲା । ପଞ୍ଚଦଶ ଶତାବ୍ଦୀର ପ୍ରଥମପାଦରେ ରଚିତ ଶାରଳା ଦାସଙ୍କ ମହାଭାରତରୁ ଏହା ନିଶ୍ଚିତ ଭାବରେ ପ୍ରମାଣିତ ହୁଏ । ବିରାଟ ରାଜାଙ୍କ ରାଜ୍ୟରେ ଭୀମ ଯେଉଁ ମଲ୍ଲ ସହିତ ଯୁଦ୍ଧ କରିଥିଲେ, ସେହି ମଲ୍ଲଙ୍କ ପୂର୍ବପୁରୁଷମାନଙ୍କ ଶୌର୍ଯ୍ୟ ବୀର୍ଯ୍ୟ ବର୍ଣ୍ଣନା କରିବାକୁ ଯାଇ ଶାରଳାଦାସ ବିରାଟପର୍ବରେ ଲେଖିଛନ୍ତି :—

ବାର ଚୁଡ଼ଙ୍ଗ ନଗର ପଶ୍ଚିମର କୋଣେ
ବକ୍ରବାହୁ ଯଜ୍ଞେ ନବ ସହସ୍ର ଯୋଜନେ ।
ପଞ୍ଚସହସ୍ର ଯୋଜନ ଯେ କଟକ ସ୍ଥଳୀ
ସେ ମାଲ ଡେଙ୍ଗା ପାଞ୍ଚ ଯୋଜନ ଉଗୁଳା ।

କହିବା ବାହୁଲ୍ୟ ଯେ ଏଠାରେ ଚୁଡ଼ଙ୍ଗ କଟକକୁ ବାର ଚୁଡ଼ଙ୍ଗ ନଗର ବୋଲି ବର୍ଣ୍ଣନା କରାଯାଇଛି । ପରବର୍ତ୍ତୀ ପଦରେ "ଯେ କଟକ ସ୍ଥଳୀ" ଇତ୍ୟାଦି ଦ୍ୱାରା ଏହା ପରିଷ୍କାର ଭାବରେ ସୂଚିତ ଦିଆ ଯାଇଛି ଯେ ଏହି ବାରଚୁଡ଼ଙ୍ଗ ନଗର ଗୋଟିଏ କଟକ ବା ଦୁର୍ଗ ଥିଲା । ଏହି ଚୁଡ଼ଙ୍ଗନଗର ବା ଚୁଡ଼ଙ୍ଗ କଟକ ଯେ ଓଡ଼ିଶାରେ ଅବସ୍ଥିତ ଥିଲା ଓ ଏହା ଯେ କାଳ୍ପନିକ ନାମ ନୁହେଁ, ଏହା ମଧ୍ୟ ଶାରଳା ଦାସ ମହାଭାରତରୁ ନିଶ୍ଚିତରୂପେ ଜଣାଯାଏ । ମଲ୍ଲର ଆତ୍ମଜଣେ ପୂର୍ବପୁରୁଷର ଶୌର୍ଯ୍ୟ ବୀର୍ଯ୍ୟ

ବର୍ଣ୍ଣନା କରିବାକୁ ଯାଇ ଶାରଳାଦାସ ଉଲ୍ଲିଖିତ ପଦଗୁଡ଼ିକର ଟିକେ ବୃଦ୍ଧାଡ଼ ପରେ ପୁଣି ଲେଖିଛନ୍ତି :—

ହକଣ କୋଶଗ୍ରି ପୁଣ ମଲ୍ଲକେଶୀ ବୀର
ଏହାଙ୍କ ପ୍ରହାରରେ ଖଣ୍ଡଗିରି ଚୂର ॥

ଓଡ଼ିଶାର ଚୂଡ଼ଙ୍ଗଗଡ଼ କଥା ଲେଖିବା ପରେ ଏହି ଗଡ଼ର ଦଶମାଇଲ ଦୂରରେ ଥିବା ଖଣ୍ଡଗିରିର କଥା କବିଙ୍କ ମନରେ ପଡ଼ି ଯାଇଛି । ଏଣୁ ତାଙ୍କ ବର୍ଣ୍ଣିତ ଚୂଡ଼ଙ୍ଗ କଟକ ବର୍ତ୍ତମାନର ଶାରଙ୍ଗଗଡ଼ ଛଡ଼ା ଅନ୍ୟ କିଛି ହୋଇନପାରେ ! ମଧ୍ୟପର୍ବରେ ଶ୍ରୀକୃଷ୍ଣଙ୍କ ନବଗୁଞ୍ଜର ରୂପ ପ୍ରଦର୍ଶନ କରିବାବେଳେ ଶାରଳାଦାସ ଅର୍ଜ୍ଜୁନଙ୍କ ମୁହଁରେ ବାରଙ୍ଗ ଡାହାଡ଼ର କଥା ମଧ୍ୟ ଉଲ୍ଲେଖ କରିଛନ୍ତି । ତା ଛଡ଼ା ଚୂଡ଼ଙ୍ଗଦେଶ ବା ଚୂଡ଼ଙ୍ଗ କଟକ ତାଙ୍କ ମହାଭାରତରେ ଅନେକ ସ୍ଥାନରେ ବର୍ଣ୍ଣିତ ହୋଇଛି । ଏଠାରେ ଉଲ୍ଲେଖ ଯୋଗ୍ୟ ଯେ ଶାରଳାଦାସଙ୍କ ମହାଭାରତ ମୂଳସଂସ୍କୃତ ମହାଭାରତର ଅନୁକରଣ, ଅନୁଶୀଳନ ବା ଅନୁବାଦ ନୁହେଁ । ଏହା ତତ୍କାଳୀନ ଓଡ଼ିଶାର ବିଶ୍ୱକୋଷ କହିଲେ ଚଳେ ।

ଅତଏବ ଏହାହିଁ ପ୍ରତିପାଦିତ ହେଉଛି ଯେ ବାରଙ୍ଗ ଷ୍ଟେସନ ନିକଟବର୍ତ୍ତୀ ଗଡ଼ଟି ପଞ୍ଚକଟକର ପ୍ରଥମ କଟକ ଥିଲା । ଏହାର ମୌଳିକ ନାମ ଥିଲା ଗଙ୍ଗେଶ୍ୱର ବା ଚୂଡ଼ଙ୍ଗ କଟକ । ୧୧୧୨ ଖ୍ରୀଷ୍ଟାବ୍ଦ ବେଳକୁ ଚୋଡ଼ଗଙ୍ଗ ଓଡ଼ିଶା ଦଖଲ କରିଥିଲେ । ଏଣୁ ଏହି ତାରିଖର କେତେକ ବର୍ଷ ପରେହିଁ ଚୋଡ଼ଗଙ୍ଗ କଟକ ସ୍ଥାପିତ ହୋଇଥିବ । ଯେଉଁ ସ୍ଥାନରେ ଚୂଡ଼ଙ୍ଗ କଟକ ସ୍ଥାପିତ ହେଲା, ସେହି ସ୍ଥାନଟିର ନାମଟି ହୁଏତ ଶାରଙ୍ଗ ଥିଲା । କାରଣ ଏହି

ଅଞ୍ଚଳର ସ୍ଥାନସ୍ଥାନଙ୍କର ବାରଙ୍ଗ, ରେତାଙ୍ଗ, ଡେଲଙ୍ଗ ଇତ୍ୟାଦି ନାମ ବର୍ତ୍ତମାନ ସୁଦ୍ଧା ଅଛି । ଏଗୁଡ଼ିକ ଶାବରିକ ନାମ ହୋଇ ପାରେ । ଶାରଙ୍ଗଗଡ଼ର ଗୋଟିଏ ଅଞ୍ଚଳ ବର୍ତ୍ତମାନ ସୁଦ୍ଧା ଚୁଡ଼ଙ୍ଗ ଗଡ଼ ବୋଲି ଅଭିହିତ ହୁଏ । ଏଥିରୁ ଜଣାଯାଏ ଯେ ଚୋଡ଼ଗଙ୍ଗ ଦେବଙ୍କ ଦ୍ୱାରା ସ୍ଥାପିତ ଦୁର୍ଗ ଶାରଙ୍ଗ ଗଡ଼ ଓ ଚୁଡ଼ଙ୍ଗଗଡ଼ ଏହି ଉଭୟ ନାମରେ ଅଭିହିତ ହେଉଥିଲା । ପରବର୍ତ୍ତୀ କାଳରେ ଶେଷୋକ୍ତ ନାମଟି ଲୋପ ପାଇ ପ୍ରଥମୋକ୍ତ ନାମଟିହିଁ ପ୍ରାଧାନ୍ୟ ପାଇଲା । ଶାରଙ୍ଗ ଗଡ଼କୁ ଶାରଙ୍ଗ କେଶରୀ ସ୍ଥାପନ କରିଥିଲେ ବୋଲି କୌଣସି କୌଣସି ଇତିହାସରେ ଲେଖାଅଛି । କିନ୍ତୁ ଶାରଙ୍ଗ କେଶରୀ ନାମଟି ଗୋଟିଏ ସୃଷ୍ଟ ନାମ । ଏହାର ବିଶଦ ଆଲୋଚନା ପରେ କରାଯିବ ।

---

# ଉପକ୍ରମଣିକା

ବହୁକାଳ ପୂର୍ବରୁ ମାଦଳାପାଞ୍ଜୀ ଓଡ଼ିଶା ଇତିହାସର ଉପାଦାନରୂପେ ବ୍ୟବହୃତ ହୋଇ ଆସୁଅଛି । ଯେତେବେଳେ ତାମ୍ର, ଶିଳାଲେଖ ଇତ୍ୟାଦିରୁ ଇତିହାସ ସଂକଳନ କରିବାର ଉପାୟ ଉଦ୍ଭାବିତ ହୋଇ ନ ଥିଲା, ସେତେବେଳେ ମାଦଳାପାଞ୍ଜୀ ଏକା ଧାରରେ ଓଡ଼ିଶାର ଇତିହାସ ଓ ଐତିହାସିକ ଉପାଦାନ ହୋଇ ରହିଥିଲା । ହିନ୍ଦୁମାନଙ୍କଦ୍ୱାରା ଲିଖିତ ଏକାନ୍ତ ବିରଳ ଐତିହାସିକ ଗ୍ରନ୍ଥମାନଙ୍କ ମଧ୍ୟରେ ମାଦଳାପାଞ୍ଜୀ ଅନ୍ୟତମ । ଏହି ହେତୁରୁ ଓଡ଼ିଶାର ଐତିହାସିକ ଉପାଦାନମାନଙ୍କ ମଧ୍ୟରେ ଏହାର ବିଶିଷ୍ଟ ସ୍ଥାନ ରହିଛି । ମାଦଳାପାଞ୍ଜୀକୁ ଉପେକ୍ଷା କରି ଯଦି କେହି ଓଡ଼ିଶାର ଇତିହାସ ଲେଖନ୍ତି, ତାହା ହେଲେ ସେପରି ଲେଖକଙ୍କର ଓଡ଼ିଶା ଇତିହାସର ଜ୍ଞାନ ଅପୂର୍ଣ୍ଣ ବୋଲି କହିବାକୁ ହେବ । ମାତ୍ର ମାଦଳାପାଞ୍ଜୀକୁ ଉପେକ୍ଷା କରିବା ଯେପରି ଅନୁଚିତ, ତାକୁ ଯଥେଚ୍ଛ ବ୍ୟବହାର କରିବା ମଧ୍ୟ ସେହିପରି ଅନୁଚିତ । ଆଧୁନିକ ଇତିହାସ ଲେଖକଙ୍କୁ କେତେଗୁଡ଼ିଏ ନିର୍ଦ୍ଦିଷ୍ଟ ମୌଳିକ ନୀତିର ବଶବର୍ତ୍ତୀ ହୋଇ ଇତିହାସ ଲେଖିବାକୁ ପଡ଼େ । ପ୍ରଥମ ମୌଳିକ ନିୟମ ଏହି ଯେ ପ୍ରତ୍ୟେକ ଐତିହାସିକ ଆଲୋଚନା ଉପାଦାନ ଉପରେ ପ୍ରତିଷ୍ଠିତ ହେବ; କୌଣସି କଥା ମନରୁ ଗଢ଼ି ଲେଖାଯାଇ ପାରିବ ନାହିଁ । ଦ୍ୱିତୀୟ ମୌଳିକ ନିୟମ ଏହି ଯେ ଯେଉଁ ଐତିହାସିକ ଉପାଦାନ ଉପରେ ଐତିହାସିକ ଆଲୋଚନା ନିର୍ଭର କରୁଛି, ତାହା ପ୍ରାଚୀନ କି ଅର୍ବାଚୀନ ଓ ଭଲ କି ଭେଲ, ଏକଥା ଭଲରୂପେ ବିଚାର କରିବାକୁ ପଡ଼ିବ । ତୃତୀୟ ନିୟମ ଏହି ଯେ

ଯେଉଁ ବିଷୟ କୌଣସି ଉପାଦାନରେ ନାହିଁ ତାହା ଅଛି ବୋଲି କୁହାଯାଇ ପାରିବ ନାହିଁ । ଚତୁର୍ଥ ନିୟମ ଏହି ଯେ କୌଣସି ମତ ଉପରେ କୌଣସି ଯୁକ୍ତି ସଂସ୍ଥାପନ କରାଯାଇ ପାରିବ ନାହିଁ । ଅମୁକ ପଣ୍ଡିତ ଏହା ଲେଖି ଯାଇଛନ୍ତି, ଅତଏବ ଏହା ସତ୍ୟ, ଇତିହାସ ଲେଖାରେ ଏପରି ଯୁକ୍ତିର ମୂଲ୍ୟ ନାହିଁ । ଏହି ନିୟମ-ମାନଙ୍କ ମଧ୍ୟରୁ କୌଣସିଟି ଭଙ୍ଗ ହେଲେ, ତାହା ଐତିହାସିକ-ମାନଙ୍କ ପକ୍ଷରେ ଅକ୍ଷମଣୀୟ ଦୋଷ ହୁଏ ।

ମାଦଳା ପାଞ୍ଜୀ ନିଶ୍ଚୟ ଓଡ଼ିଶା ଇତିହାସର ଗୋଟିଏ ମୌଳିକ ଉପାଦାନ, କିନ୍ତୁ ତାକୁ ଆଲୋଚନା କଲାବେଳେ ଉଲ୍ଲିଖିତ ନିୟମମାନଙ୍କର ବଶବର୍ତ୍ତୀ ହେବାକୁ ପଡ଼ିବ । ପୁସ୍ତକଟିର ଏହି ଅଂଶରେ ପ୍ରମାଣ କରିବାକୁ ଚେଷ୍ଟା କରାଯାଇଛି ଯେ ମାଦଳାପାଞ୍ଜୀ ଷୋଡ଼ଶ ଶତାବ୍ଦୀର ଶେଷଭାଗରେ ଲେଖା ହୋଇଥିଲା । ଏହା କେଉଁ କେଉଁ ଉପାଦାନରୁ ସଂକଳିତ ହୋଇଥିଲା ଓ କାହିଁକି କାରଣରୁ ସଂକଳିତ ହୋଇଥିଲା, ତାହା ପ୍ରକୃତରେ ଚିନ୍ତାର ବିଷୟ । ଦୋଳ-ପୂର୍ଣ୍ଣିମା ଦିନ ପାଞ୍ଜୀ ପାଠ ପ୍ରାୟ ସର୍ବତ୍ର ହୁଏ । ଆଜି କାଲି ସୁଦ୍ଧା ଓଡ଼ିଶାର ଅନେକ ଗ୍ରାମରେ ଜ୍ୟୋତିଷୀ ମାନଙ୍କ ମାଖରେ ତାଳପତ୍ର ଲେଖା ପାଞ୍ଜୀ ଥାଏ ଓ ଏହି ପାଞ୍ଜୀରେ ସତ୍ୟ ତ୍ରେତା ଇତ୍ୟାଦି ଯୁଗର କଥା ରହିବା ସଙ୍ଗେ ସଙ୍ଗେ କଳିଯୁଗର ରାଜଭୋଗ ସମ୍ବନ୍ଧୀୟ ଅଧ୍ୟାୟଟିଏ ମଧ୍ୟ ଥାଏ । ଯେତେଦୂର ସମ୍ଭବ, ମାଦଳା ପାଞ୍ଜୀର ରାଜଭୋଗ ଅଂଶଟି ଏହିପରି ପାଞ୍ଜୀମାନଙ୍କ ଠାରୁ ସଂକଳିତ ହୋଇଥିଲା । ତା ଛଡ଼ା ପୂର୍ବକାଳରେ ଜଗନ୍ନାଥ ମନ୍ଦିରରେ ଗୀତଗୋବିନ୍ଦ ଗାୟକ, ଭାଗବତ ପାଠକ, ପୁରାଣପଣ୍ଡା ଓ ଗାଲ୍ପି ସାଗର ପରି ଭାଟ ଜାତୀୟ ଇତିହାସ କଥକ ମଧ୍ୟ ଥାଇ ପାରନ୍ତି ।

ଏହି ଭଳି ଶ୍ରେଣୀର ଲୋକମାନଙ୍କ ପାଖରୁ ମଧ୍ୟ କେତେକ କିମ୍ବଦନ୍ତୀ ସଂଗୃହୀତ ହୋଇଥିବା ଅସମ୍ଭବ ନୁହେ । ଖୋର୍ଦ୍ଧାର ରାଜଗାଦୀ ପାଇଁ ଓଡ଼ିଶାର ଶେଷ ସ୍ୱାଧୀନ ଗଜପତି ମୁକୁନ୍ଦଦେବଙ୍କ ପୁତ୍ର ଓ ଦନାଇ ବିଦ୍ୟାଧରଙ୍କ ପୁତ୍ର ରାମଚନ୍ଦ୍ର ଦେବଙ୍କ ମଧ୍ୟରେ ଯେଉଁ ବିବାଦ ଲାଗିଥିଲା, ସେହି ବିବାଦହିଁ ମାଦଳା ପାଞ୍ଜିର ଜନ୍ମର କାରଣ ବୋଲି ଯେଉଁ ପ୍ରବାଦ ଅଛି,ତାହା ଅନେକାଂଶରେ ସତ୍ୟାଶ୍ରିତ ବୋଲି ମନେ ହୁଏ । ଉଭୟେ ଅକବରଙ୍କ ପ୍ରତିନିଧି ମାନସିଂହଙ୍କପାଖେ ସ୍ୱସ୍ୱ ଦାବି ଯେ ଉପସ୍ଥିତ କରିଥିଲେ, ଏହା ମାଦଳାପାଞ୍ଜୀରେ ବର୍ଣ୍ଣିତ ଅଛି; କିନ୍ତୁ ମାନସିଂହ ଭୋଇ ରାମଚନ୍ଦ୍ର ଦେବଙ୍କୁ ଖୋର୍ଦ୍ଧାର ରାଜଗାଦି ଦେଲେ ଓ ମୁକୁନ୍ଦ ଦେବଙ୍କ ପୁତ୍ରଙ୍କୁ ଅଳି ଜମିଦାରିକୁ ପଠାଇଦେଲେ । ଏଣୁ ରାମଚନ୍ଦ୍ର ଦେବଙ୍କଦ୍ୱାରା ମାଦଳାପାଞ୍ଜୀ ସ୍ମାରକ ସ୍ୱରୂପେ ଉପସ୍ଥାପିତ ହୋଇଥିବା ଅସମ୍ଭବ ନୁହେ ।

ଯେଉଁଭାବରେ ହେଉ ଓ ଯେ କାରଣରୁ ହେଉ ମାଦଳା ପାଞ୍ଜୀ ଷୋଡ଼ଶ ଶତାବ୍ଦୀର ଶେଷ ଭାଗରେ ଲେଖା ହୋଇଥିଲା । ଏହା ଯେପରି ଭାବରେ ଲେଖା ହୋଇ ଥିଲା ଠିକ୍ ସେହିପରି ଯଦି ଆମ୍ଭମାନଙ୍କ ପାଖରେ ପହଞ୍ଚି ପାରିଥାନ୍ତା, ତାହାହେଲେ ସେଥିରୁ ବହୁତେଶୀ ଐତିହାସିକ ତଥ୍ୟ ମିଳିଥାନ୍ତା । କିନ୍ତୁ ତାହା ହୋଇ ପାରି ନାହିଁ । ପରବର୍ତ୍ତୀ କାଳରେ ମାଦଳା ପାଞ୍ଜୀର ରୂପକୁ କିପରି ବିଭିନ୍ନ ଭାବରେ ବଦଳାଇ ଦିଆଯାଇଛି, ତାହା ଏହି ପୁସ୍ତକର କେତେକ ସ୍ଥାନରେ ଆଲୋଚିତ ହୋଇଛି । ମାଦଳାପାଞ୍ଜୀ ଲିଖିତ ହେବାର ପ୍ରାୟ ଅଢ଼େଇଶ ବର୍ଷ ପରେ ୧୮୨୨ ମସୀହାରେ ଷ୍ଟାର୍ଲିଂ ସାହେବଙ୍କଦ୍ୱାରା ସର୍ବ ପ୍ରଥମେ ଏହା ଐତିହାସିକ ଉପାଦାନରୂପେ ବ୍ୟବହୃତ ହୋଇଥିଲା । ଯେତେବେଳେ ଏହାର ମୌଳିକତା

ଅସ୍ଵୀକାର କରି ତାହା କହିବା ସମ୍ଭବ ନୁହେଁ; କିନ୍ତୁ ଏହାର ପରବର୍ତ୍ତୀ ପରିବର୍ତ୍ତନ ସହଜରେ ଧରା ପଡ଼ିଯାଏ । ମାଦଳାପାଞ୍ଜୀର ଯେଉଁଗୁଡ଼ିଏ କପି ମିଳୁଛି, ସେଥିରେ ରାଜାମାନଙ୍କ ନାମ ଓ ଘଟନାବଳୀର ପରସ୍ପର ମେଳ ନାହିଁ । ଏଥିରୁ ଜଣାଯାଏ ଯେ ମୌଳିକ ମାଦଳା ପାଞ୍ଜୀରୁ ସମସ୍ତେ କିଛି କିଛି ସଂଗ୍ରହ କରିଛନ୍ତି କିନ୍ତୁ ନିଜେ ନିଜେ ମଧ୍ୟ ଅନେକ କଥା ସଂଗ୍ରହ କରି ସ୍ଵ ସ୍ଵ ପୋଥିରେ ଲେଖି ଯାଇଛନ୍ତି ।

ଏହି ସବୁ କାରଣରୁ ପାଞ୍ଜୀରୁ ପ୍ରାପ୍ତ ଐତିହାସିକ ତଥ୍ୟ ସବୁକୁ ବହୁଭାବରେ ଆଲୋଚନା କରିବାର ଅବଶ୍ୟକତା ରହିଛି । ପୁସ୍ତକଟିର ଏହି ଅଂଶରେ ଏପରି ଆଲୋଚନା କରିବାର ଚେଷ୍ଟା କରାଯାଇଛି, କିନ୍ତୁ ଏଥିରେ ମାଦଳା ପଞ୍ଜୀର ଆଲୋଚନା ଶେଷ ହୋଇ ନାହିଁ । ଏପୁସ୍ତକଟି ଗୁଣିବର୍ଗଙ୍କଦ୍ଵାରା ଆଦୃତ ହେଲେ ଏହାର ଦ୍ଵିତୀୟ ଭାଗରେ ମାଦଳାପାଞ୍ଜୀର ଆଲୋଚନା ଶେଷ କରିବାର ବାସନା ରହିଲା ।

ପରିଶେଷରେ ବକ୍ତବ୍ୟ ଏହି ଯେ ଏ ପୁସ୍ତକଟି ଆଠ ବର୍ଷ ପୂର୍ବେ ଲିଖିତ ହୋଇ ରହିବା ପରେ ବର୍ତ୍ତମାନ ପ୍ରକାଶିତ ହେଉଛି । ଏହି ଆଠ ବର୍ଷ ମଧ୍ୟରେ ଓଡ଼ିଶା ଇତିହାସର ଅନେକ ନୂତନ ଉପାଦାନ ଆବିଷ୍କୃତ ହୋଇଛି ଓ ତଦ୍ଵାରା ଓଡ଼ିଶା ଇତିହାସରେ ନୂତନ ଆଲୋକପାତ ମଧ୍ୟ ହୋଇଛି । ଏହା ମଧ୍ୟରେ ଓଡ଼ିଶା ଇତିହାସ ସମ୍ବନ୍ଧୀୟ କେତେଖଣ୍ଡି ଇଂରାଜୀ ପୁସ୍ତକ ମଧ୍ୟ ପ୍ରକାଶିତ ହୋଇଛି । ଏଥିମଧ୍ୟରୁ ଲେଖକର ସ୍ଵରଚିତ Archaeological Remains at Bhubaneswar (Orient Longmans, Calcutta) Chronology of the Bhauma-Karas

and the Somavamsis of Orissa (The Law, Journal Press, Madras.) ନାମକ ପୁସ୍ତକଦ୍ୱୟ ୧୯୨୧ ମସୀହାରେ ପ୍ରକାଶିତ ହୋଇଛି ଓ ସେଥିରେ ମାଦଳାପାଞ୍ଜିର ଉପାଦାନକୁ ବହୁସ୍ଥଳରେ ଆଲୋଚନା କରାଯାଇଛି ଓ ବ୍ୟବହାର ମଧ କରାଯାଇଛି । ଶେଷୋକ୍ତ ପୁସ୍ତକରେ ପ୍ରମାଣ କରାଯାଇଛି ଯେ ଭୌମବଂଶୀୟ ରାଜାମାନେ ୭୩୬ ଖ୍ରୀଷ୍ଟାବ୍ଦରୁ ୯୩୧ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଓ ସୋମବଂଶୀ କେଶରୀମାନେ ୯୩୧ ଖ୍ରୀଷ୍ଟାବ୍ଦରୁ ୧୧୧୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଓଡ଼ିଶାରେ ରାଜତ୍ୱ କରିଥିଲେ । ଏହି ଦୃଷ୍ଟିରୁ ଦେଖିବାକୁ ଗଲେ ଏହି ପୁସ୍ତକଟିର କେତେକ ଆଲୋଚନା ସମୟୋଚିତ ମନେ ହେବ ନାହିଁ । ଏଥିପାଇଁ ଲେଖକ ସୁଧୀ ପାଠକବୃନ୍ଦଙ୍କ ଠାରେ କ୍ଷମା ପ୍ରାର୍ଥନା କରୁଛି ।

କଟକ, ଜୁନ, ୧୯୬୨, କୃଷ୍ଣଚନ୍ଦ୍ର ପାଣିଗ୍ରାହୀ

# ମାଦଳା ପାଞ୍ଜୀର ଜନ୍ମକାଳ

କୌଣସି ଐତିହାସିକ ଉପାଦାନର ରଚନା କାଳ ଉପରେ ତାର ଐତିହାସିକ ମୂଲ୍ୟ ଅନେକ ପରିମାଣରେ ନିର୍ଭର କରିଥାଏ । ଯେଉଁ ସମୟର ଘଟଣା ସେହି ସମୟରେ ଯଦି ତାହା ଲେଖା ହୋଇଥାଏ, ସେହି ଲେଖାକୁ ଅବିଶ୍ୱାସ କରିବାର ବିଶେଷ କାରଣ ନ ଥାଏ । କିନ୍ତୁ ଘଟଣା ଘଟିବାର ଅନେକ ବର୍ଷ ପରେ ଯଦି ତାହା ଲିପିବଦ୍ଧ ହୋଇଥାଏ, କିମ୍ବା ଯଦି ତାହା କିମ୍ବଦନ୍ତୀ ଭାବରେ ଚଳି ଆସିଥାଏ, ତାହାହେଲେ ତାକୁ ବିଶ୍ୱାସ କରିବା ପୂର୍ବରୁ ଅନ୍ୟ ପ୍ରମାଣର ଆବଶ୍ୟକ ହୁଏ । ଉଦାହରଣ ସ୍ୱରୂପ ଓଡ଼ିଶାର ଗଙ୍ଗବଂଶର ସ୍ଥାପୟିତା ଅନନ୍ତବର୍ମଣ ଚୋଡ଼ଗଙ୍ଗଦେବଙ୍କ ତାମ୍ରଶାସନରେ ତାଙ୍କ ପିତା, ପିତାମହ ଇତ୍ୟାଦିଙ୍କ ଯେଉଁ ନାମ ମିଳେ ସେଗୁଡ଼ିକୁ ସତ୍ୟ ବୋଲି ହିଁ ଧରିବାକୁ ହେବ ; କାରଣ ଏହି ତାମ୍ରଶାସନଗୁଡ଼ିକ ଚୋଡ଼ଗଙ୍ଗ ଦେବଙ୍କ ଜୀବିତାବସ୍ଥାରେ ଲିଖିତ ହୋଇଥିଲା ଓ ସେଗୁଡ଼ିକୁ ଗ୍ରହୀତାମାନଙ୍କୁ ଦେବା ପୂର୍ବରୁ ସେଗୁଡ଼ିକରେ ଏହି ରାଜାଙ୍କର ସିଲ୍ ମୋହର ମଧ୍ୟ ବସିଥିଲା । ଏଣୁ ନିଜେ ଚୋଡ଼ଗଙ୍ଗ ଦେବ ଯେ ତାଙ୍କ ପିତା, ପିତାମହ ଇତ୍ୟାଦିଙ୍କ ନାମ ଭୁଲଭାବରେ ଲେଖାଇ ଥିବେ, ଏମନ୍ତ ଭାବିବାର ଆଦୌ କାରଣ ନାହିଁ । କିନ୍ତୁ ଚୋଡ଼ଗଙ୍ଗଙ୍କର ମୃତ୍ୟୁର ଅନେକ ଶତାବ୍ଦୀପରେ ଲିଖିତ କୌଣସି ଲେଖରୁ ଯଦି ତାଙ୍କର ବଂଶାବଳୀ ମିଳେ, ତାହାହେଲେ ତାର ସତ୍ୟାସତ୍ୟ ବହୁ ସାବଧାନତା ସହିତ ବିଚାର କରିବାକୁ ହେବ ।

ମାଦଳାପାଞ୍ଜୀ ନିଶ୍ଚୟ ଓଡ଼ିଶା ଇତିହାସର ଗୋଟିଏ ଉପାଦାନ, କିନ୍ତୁ ତାହା କେବେ ଲେଖା ହୋଇଥିଲା, ଏ କଥା ସ୍ଥିର କରିବା ପରେ ତାର ଐତିହାସିକ ମୂଲ୍ୟ ଅବଧାରଣ କରିବା ଉଚିତ ! ଯେଉଁ ବୈଦେଶିକ ପଣ୍ଡିତମାନେ ଓଡ଼ିଶା-ଇତିହାସ ସମ୍ବନ୍ଧରେ କିଛି ଲେଖିଛନ୍ତି, ସେମାନେ ଓଡ଼ିଆ ଭାଷାରେ ଅନଭିଜ୍ଞ ଥିବାରୁ ମାଦଳାପାଞ୍ଜୀରୁ ଯେତେ ତଥ୍ୟ ସଂଗ୍ରହ କରିବା କଥା ତାହା ସେମାନେ କରିପାରି ନାହାନ୍ତି । ଷ୍ଟାର୍ଲିଂ ଓ ହଣ୍ଟର୍‌ଙ୍କ ପରେ ବୈଦେଶିକ ପଣ୍ଡିତମାନଙ୍କ ମଧ୍ୟରୁ କେହି କେହି ମାଦଳାପାଞ୍ଜୀ ସମ୍ବନ୍ଧରେ ପଦେ ଅଧେ କହିଛନ୍ତି ଓ କେହି କେହି ବା ଏହା ସମ୍ବନ୍ଧରେ ଏକାବେଳକେ ନୀରବ ହୋଇଛନ୍ତି । ସ୍ୱର୍ଗୀୟ ରମାପ୍ରସାଦ ଚନ୍ଦଙ୍କ ଛଡ଼ା ଅନ୍ୟ କେହି ଏହାର ରଚନାକାଳ ନିର୍ଣ୍ଣୟ କରିବାକୁ ଚେଷ୍ଟା ମଧ୍ୟ କରି ନାହାନ୍ତି । ଚନ୍ଦ ମହାଶୟ ୧୯୨୭ ମସୀହାର ବିହାର ଓଡ଼ିଶା ରିସାର୍ଚ୍ଚ ସୋସାଇଟିର ପତ୍ରିକାରେ ( ପୃ ୧୦ ) ଗୋଟିଏ ପ୍ରବନ୍ଧ ଲେଖି ପ୍ରମାଣ କରିବାକୁ ଚେଷ୍ଟା କରିଛନ୍ତି ଯେ ମାଦଳାପଞ୍ଜୀ ମୋଗଲ୍ ରାଜତ୍ୱ କାଳରେ ଲିଖିତ ହୋଇଥିଲା । ଏହାର କାରଣ ଦର୍ଶାଇବାକୁ ଯାଇ ସେ କହିଛନ୍ତି ଯେ ମାଦଳା-ପାଞ୍ଜୀରେ ମୋଗଲ୍ ଶବ୍ଦ ତଥା ଅନ୍ୟ କେତେକ ମୁସଲମାନୀ ଶବ୍ଦ ବ୍ୟବହୃତ ହୋଇଛି । ଚନ୍ଦ ମହାଶୟଙ୍କ ଏହି ଯୁକ୍ତି ବେଶୀ ମାତବର ବୋଲି ସମସ୍ତଙ୍କର ମନେ ହେବ ନାହିଁ । କାରଣ ଓଡ଼ିଶା ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ ସ୍ୱାଧୀନ ରହିଥିଲେ ମଧ୍ୟ ଏତେବେଳକୁ ପାର୍ଶ୍ୱବର୍ତ୍ତୀ ରାଜ୍ୟଗୁଡ଼ିକରେ ମୁସଲମାନ୍ ରାଜତ୍ୱ ପ୍ରଚଳିତ ହୋଇ ସାରିଥିଲା ଓ ଭାରତରେ ମୁସଲମାନ୍ ରାଜତ୍ୱର ପ୍ରାରମ୍ଭ ଠାରୁ ତୁର୍କୀ ଆଫଗାନ୍ ରାଜତ୍ୱର ଅବସାନ ପର୍ଯ୍ୟନ୍ତ ମୋଗଲମାନେ ଦଳ ଦଳ ହୋଇ ଭାରତର ସୀମାନ୍ତରେ ଅନେକ ଥର ଆକ୍ରମଣ କରି ସାରି

ଥିଲେ । ଏଣୁ ଓଡ଼ିଶାରେ ଯେତେବେଳେ ମୁସଲମାନ୍ ବା ମୋଗଲ ରାଜତ୍ୱ ନ ଥିଲା, ସେତେବେଳେ ମୋଗଲ ବନ୍ଦି ଓ କେତେକ ମୁସଲମାନୀ ଶବ୍ଦ ଯେ ଏହି ଦେଶରେ ପଶି ପ୍ରଚଳିତ ହୋଇ ନ ଥିଲା, ଏ କଥା ନିଶ୍ଚିତ ଭାବରେ କୁହାଯାଇ ପାରିବ ନାହିଁ । ଏଣୁ ଚନ୍ଦ୍ର ମହାଶୟଙ୍କ ପନ୍ଥା ଧରି ମାଦଳାପାଞ୍ଜିର ରଚନା କାଳ ନିର୍ଣ୍ଣୟ କରିବା ପାଇଁ ଅନ୍ୟ ପ୍ରମାଣମାନଙ୍କ ଉପରେ ନିର୍ଭର କରିବାକୁ ହେବ ।

ମାଦଳାପାଞ୍ଜିର ପ୍ରଥମାଂଶରେ ସତ୍ୟ, ତ୍ରେତା ଓ ଦ୍ୱାପର ଯୁଗର ମାନ୍ଧାତା, ଦଶରଥ ଓ ଯୁଧିଷ୍ଠିର ପ୍ରଭୃତି ରାଜାମାନଙ୍କ ନାମ ଲେଖା ଅଛି ଓ ଏମାନେ ପ୍ରତ୍ୟେକେ ବହୁ ସହସ୍ର ବର୍ଷ ଧରି ରାଜତ୍ୱ କରିଥିଲେ ବୋଲି ବର୍ଣ୍ଣିତ ଅଛି । ଏଣୁ ପାଞ୍ଜିର ଏହି ଅଂଶକୁ ଐତିହାସିକ ବୋଲି ନଧରି ପୌରାଣିକ ବୋଲି ଧରିବାକୁ ହେବ । ଏହା ପରେ କଳିଯୁଗର ଓଡ଼ିଶାରେ ରାଜତ୍ୱ କରିଥିବା ସୋମବଂଶ, କେଶରୀବଂଶ, ଗଙ୍ଗବଂଶ, ସୂର୍ଯ୍ୟବଂଶ ଓ ଭୋଇବଂଶର ନାମ ପାଞ୍ଜିରେ ଲେଖା ଅଛି ଓ ପ୍ରତ୍ୟେକ ରାଜବଂଶର ରାଜାମାନଙ୍କ ଅମଳରେ ଯାହା ଘଟିଥିଲା, ତାର ସଂକ୍ଷିପ୍ତ ବା ବିସ୍ତୃତ ବିବରଣୀ ଦିଆଯାଇଛି । ପାଞ୍ଜି ବର୍ଣ୍ଣିତ କେଶରୀ ବଂଶର କେତେକ ରାଜାଙ୍କ ନାମ ତାମ୍ର ଶାସନରୁ ପ୍ରାପ୍ତ କେତେକ ସୋମବଂଶୀ ରାଜାଙ୍କ ନାମ ମିଳି ଯାଏ, କିନ୍ତୁ ଏହି ସୋମବଂଶୀ ବା କେଶରୀରାଜାମାନଙ୍କ ପୂର୍ବରୁ ଅନ୍ୟ କୌଣସି ସୋମବଂଶ ଓଡ଼ିଶାରେ ରାଜତ୍ୱ କରିଥିବାର ପ୍ରମାଣ ଅନ୍ୟ କୌଣସି ପ୍ରାଚୀନ ଲେଖରୁ ଏ ପର୍ଯ୍ୟନ୍ତ ମିଳି ନାହିଁ । ଯାହା ହେଉ, ମୋଟାମୋଟି ଭାବରେ ଦେଖିବାକୁ ଗଲେ ମାଦଳା-ପାଞ୍ଜିରେ ଓଡ଼ିଶାର ରାଜବଂଶମାନଙ୍କର ଯେଉଁ କ୍ରମ ଦିଆ ହୋଇଛି,

ତାହା ଅନୈତିହାସିକ ନୁହେ । ଠିକ୍ କେଉଁ ଦିନ ବା କେଉଁ ବର୍ଷରେ ମାଦଳାପାଞ୍ଜୀ ଲିଖିତ ହୋଇଥିଲା, ତାହା ନିର୍ଣ୍ଣୟ କରିବା ଏକପ୍ରକାର ଅସମ୍ଭବ , କିନ୍ତୁ ଉଲ୍ଲିଖିତ ରାଜବଂଶମାନଙ୍କ ମଧ୍ୟରୁ କେଉଁ ରାଜବଂଶ ଅମଳରେ ତାହା ଲିଖିତ ହୋଇଥିଲା, ଏହାହିଁ ବର୍ତ୍ତମାନ ବିଚାର୍ଯ୍ୟ ।

ଯଦି ଗଙ୍ଗବଂଶ ରାଜତ୍ୱକାଳରେ ସୁଦ୍ଧା ମାଦଳା ପାଞ୍ଜୀ ଲିଖିତ ହୋଇ ନଥିଲା ବୋଲି ପ୍ରମାଣ କରିଯାଇ ପାରେ, ତାହା ହେଲେ ଗଙ୍ଗବଂଶର ପୂର୍ବବର୍ତ୍ତୀ ରାଜବଂଶମାନଙ୍କ ଅମଳରେ ତାହା ଲିଖିତ ହୋଇ ଥିବାର ପ୍ରଶ୍ନ ଉଠୁ ନାହିଁ । ଏଣୁ ଏହି ଗ୍ରନ୍ଥ ଗଙ୍ଗ ରାଜତ୍ୱ କାଳରେ ଲିଖିତ ହୋଇଥିଲା କି ନା, ତାହାହିଁ ପ୍ରଥମେ ବିଚାର କରାଯାଉ । ଓଡ଼ିଶାରେ ଗଙ୍ଗବଂଶର ଉତ୍ପତ୍ତି ବର୍ଣ୍ଣନା କରିବାକୁ ଯାଇ ପାଞ୍ଜୀକାର ଲେଖିଛନ୍ତି ଯେ କେଶରୀ ବଂଶର ଶେଷ ରାଜା ଶୁନ୍ୟ କେଶରୀ ବା ସିଦ୍ଧେଶ୍ୱରକଳ୍ପ କେଶରୀଙ୍କ ସହିତ ତାଙ୍କ ଅମାତ୍ୟ ବାସୁଦେବ ରଥ ବା ବାସୁଦେବ ବାହିନୀପତିଙ୍କ କଳହ ହେବାରୁ ରଥେ ଭୁବନେଶ୍ୱର ମହାଦେବଙ୍କ ସେବା କରି କେଶରୀବଂଶରେ ଧ୍ୱଂସ କାମନା କଲେ । 'ଏଥକୁ ଭୁବନେସର ଦେବଙ୍କ ଆଜ୍ଞା ହୋଇଲା, ତୁ ଦକ୍ଷିଣ ଯାଇ ଗୋକର୍ଣ୍ଣେଶ୍ୱର ବାର୍ଯ୍ୟରୁ ଯେ ରାଣ୍ଡିପୁଅ ଚୋରଗଙ୍ଗ ଅଛି ତାକୁ ଆମ୍ଭ ଆଜ୍ଞାରେ ଆଣି ଓଡ଼ିଶାରେ ରାଜତ୍ୱ କରାଇବୁ । ଏମନ୍ତକୁ ସେ ବ୍ରାହ୍ମଣ ଦକ୍ଷିଣ ଯାଇ ଦେଖିଲା ରାଣ୍ଡିପୁଅ ଚୋରଗଙ୍ଗ ଟୋକାଙ୍କ ସଙ୍ଗରେ ଖେଳରେ ରାଜା ହୋଇଛି (ପୃ ୨୫) ।" * ବାସୁଦେବ ରଥେ ପଦର ଦିନ

---

* ଏଠାରେ ଦିଆହୋଇଥିବା ସମସ୍ତ ଉଦ୍ଧୃତାଂଶ ପ୍ରାଚୀ ସମିତିରୁ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ପ୍ରକାଶିତ ମାଦଳାପାଞ୍ଜୀ ପୁସ୍ତକରୁ

ଅନୁସରଣ କରିବା ପରେ ଏହି ବାଳକ ଚୋଡ଼ଗଙ୍ଗାଙ୍କୁ ଭୁବନେଶ୍ୱର ଦେବଙ୍କ ଆଜ୍ଞା ଜଣାଇଥିଲେ । ତା ପରେ ଚୋଡ଼ଗଙ୍ଗା ତାଙ୍କ ମାତାଙ୍କ ଆଦେଶରେ ନେତାଇ ଧୋବଣୀ ପାଖକୁ ଯାଇ ଦେଖିଲେ ଯେ "ନେତାଇ ଧୋବଣୀ ଘାଟ ବାନ୍ଧୁଛି । ଗୋଡ଼ ଗୋଟିଏ ଜାଳୁଅଛି । ଏହା ତାଙ୍କ ଶୁଣି କୋଡ଼ପୁଅକୁ କୁଲରେ ଦେଇ ଏହାକୁ କଥା କହିଲା (ପୃ ୨୨) ।" ଏହି ନେତାଇ ଧୋବଣୀ ଠାରୁ ସିଦ୍ଧ ମନ୍ତ୍ର ଆଣି ବାଳକ ଚୋଡ଼ଗଙ୍ଗା "କନ୍ୟା ୧ ଅଂ ଧନ କୃଷ୍ଣ ତ୍ରୟୋଦଶୀ ଗୁରୁବାର ଦିନ ନାଟ ବେଶରେ ଯାଇ କଟକ ମାଡ଼ବସି ରାଜା ହୋଇଲା (ପୃ ୨୨) ।"

ଓଡ଼ିଶାରେ ଗଙ୍ଗବଂଶର ଉତ୍ପତ୍ତି ସମ୍ବନ୍ଧରେ ମାଦଳାପାଞ୍ଜିରେ ଯାହା ବର୍ଣ୍ଣିତ ଅଛି, ତାହା ତାମ୍ର ଶାସନମାନଙ୍କ ଦ୍ୱାରା ସମର୍ଥିତ ହୁଏ ନାହିଁ । ଅନନ୍ତ ବର୍ମଣ ଚୋଡ଼ଗଙ୍ଗଦେବଙ୍କ ଯେଉଁ ୭ଟି ତାମ୍ରଶାସନ ଆଜି ପର୍ଯ୍ୟନ୍ତ ମିଳିଛି, ସେଥି ମଧ୍ୟରୁ ପ୍ରତ୍ୟେକଟିରେ ତାଙ୍କ ପିତାଙ୍କ ନାମ ଦେବେନ୍ଦ୍ର ବର୍ମଣ ରାଜରାଜ (ପ୍ରଥମ) ବୋଲି ଉଲ୍ଲେଖ ଅଛି ଓ କେତୋଟିରେ ତାଙ୍କର ମାତା ରାଜସୁନ୍ଦରୀଙ୍କୁ ଚୋଳରାଜା ରାଜେନ୍ଦ୍ର ଚୋଳଙ୍କ କନ୍ୟା ବୋଲି କୁହାଯାଇଛି । ଦେବେନ୍ଦ୍ର ବର୍ମଣ ରାଜରାଜ (ପ୍ରଥମ) ଓ ତାଙ୍କ ପୂର୍ବପୁରୁଷମାନେ ରାଜାଥିଲେ ଏବଂ ଅନେକ ସମୟରେ ଗୋଦାବରୀ ନଦୀ ଠାରୁ ଗଞ୍ଜାମ ପର୍ଯ୍ୟନ୍ତ ସମସ୍ତ ଭୂଖଣ୍ଡ ସେମାନଙ୍କ ଅଧିକାରଭୁକ୍ତ କରି ଥିଲେ । କେଶରୀ ସୋମବଂଶୀ ରାଜତ୍ୱର ଅବସାନ ବେଳକୁ ଗଞ୍ଜାମର ଦକ୍ଷିଣ ପଟରେ ଥିବା କଳିଙ୍ଗନଗରୀ ଗଙ୍ଗବଂଶ ଓଡ଼ିଶାକୁ

---

ଗୃହୀତ ହୋଇଛି । ବନ୍ଧନୀ ଭିତରେ ଥିବା ସମସ୍ତ ପୃଷ୍ଠାଙ୍କ ଏହି ପୁସ୍ତକର ପୃଷ୍ଠାଙ୍କ ବୋଲି ବୁଝିବାକୁ ହେବ ।

ମାଡ଼ଅଛି ତାହା ଦଖଲ କରିଥିବା ଘଟନାକୁ ଗୋଟିଏ ସ୍ୱାଭାବିକ ଘଟନା ବୋଲି ଧରିବାକୁ ହେବ । ଚୋଡ଼ଗଙ୍ଗ ଓ ତାଙ୍କ ପିତା ରାଜରାଜ (ପ୍ରଥମ) ଉଭୟେ ଓଡ଼ିଶା ଆକ୍ରମଣ କରିଥିବା କଥା ତାମ୍ର ଓ ଶିଳାଲେଖରେ ଉଲ୍ଲେଖ ରହିଛି । ପାଞ୍ଜୀ ବର୍ଣ୍ଣିତ କେଶରୀ ରାଜାଙ୍କର ବିଶ୍ୱାସଘାତକ ଅମାତ୍ୟ ବାସୁଦେବ ବାହିନୀପତି ଏ କାର୍ଯ୍ୟରେ ଗଙ୍ଗମାନଙ୍କୁ ସାହାଯ୍ୟ କରିଥିବା କଥା ମଧ୍ୟ ଖୁବ୍ ସମ୍ଭବ । କିନ୍ତୁ ଚୋଡ଼ଗଙ୍ଗ ଯେ ରାଣ୍ଡୀପୁଅ ଥିଲେ କିମ୍ବା କେବଳ ଧୋବଣୀର ସିଦ୍ଧମନ୍ତ୍ର ବଳରେ ଯେ ଓଡ଼ିଶା ଦଖଲ କରିଥିଲେ, ଏ କଥା ବର୍ତ୍ତମାନ ବିଶ୍ୱାସ କରି ହେବ ନାହିଁ । ପାଞ୍ଜୀ ମତରେ ଓଡ଼ିଶାରେ ୨୭ ଜଣ ଗଙ୍ଗରାଜା ରାଜତ୍ୱ କରିଥିଲେ । କିନ୍ତୁ ତାମ୍ର ଶାସନମାନଙ୍କରୁ ଚୋଡ଼ଗଙ୍ଗ ସମେତ ସର୍ବମୋଟ ୧୫ ଜଣ ଗଙ୍ଗରାଜାଙ୍କ ନାମ ମିଳେ । ପାଞ୍ଜୀ ଓ ତାମ୍ରଲେଖମାନଙ୍କରେ ଥିବା ଗଙ୍ଗ-ବଂଶାବଳୀ ମଧ୍ୟରେ ଏପରି ବୈଷମ୍ୟର ଗୋଟାଏ ପ୍ରଧାନ କାରଣ ଏହି ଯେ କୌଣସି କୌଣସି ରାଜାଙ୍କ ଡାକ ନାମକୁ ବା ଭିନ୍ନ ନାମକୁ ପାଞ୍ଜୀକାର ଅନ୍ୟ ରାଜାର ନାମ ବୋଲି ଧରିଛନ୍ତି । ଉଦାହରଣ ସ୍ୱରୂପ, ଶିଳାଲେଖମାନଙ୍କରୁ ଜଣାଯାଏ ଯେ ଓଡ଼ିଶାରେ ଗଙ୍ଗବଂଶର ପ୍ରତିଷ୍ଠାତା ଚୋଡ଼ଗଙ୍ଗଙ୍କର ଅନ୍ତତଃ ଚାରୋଟି ଭିନ୍ନ ନାମ ଥିଲା, ଯଥା:— ଚୋଳଗଙ୍ଗ, ପରମ ଗଙ୍ଗେଶ୍ୱର, ବୀର-ଖାଜେନ୍ଦ୍ର ଚୋଡ଼ଗଙ୍ଗ ଓ ଗଙ୍ଗେଶ୍ୱର ଦେବ । କିନ୍ତୁ ପାଞ୍ଜୀକାର ଗଙ୍ଗେଶ୍ୱର ଦେବଙ୍କୁ ଆଉ ଜଣେ ରଜା ବୋଲି ଧରି ଚୋଡ଼ଗଙ୍ଗଙ୍କ ଠିକ୍ ପରବର୍ତ୍ତୀ ରଜା ବୋଲି ଲେଖିଛନ୍ତି ଓ ଏହି ରାଜାଙ୍କର ତାଙ୍କ ନିଜ କନ୍ୟା ସହିତ ଗୋଟାଏ କୁତ୍ସିତ ସମ୍ବନ୍ଧ ଥିଲା ବୋଲି ମଧ୍ୟ ଉଲ୍ଲେଖ କରିଛନ୍ତି । ଏହି କୁତ୍ସିତ କିମ୍ବଦନ୍ତୀ ଅବଲମ୍ବନରେ କବିବର ରାଧାନାଥ ତାଙ୍କ ପାର୍ବତୀ କାବ୍ୟ ଲେଖିଥିବା କଥା

ସମସ୍ତଙ୍କୁ ଜଣା । ଏଣୁ ଏହାର ଅଧିକ ଆଲୋଚନା ଏଠାରେ ବର୍ତ୍ତମାନ ଆବଶ୍ୟକ ନାହିଁ ।

ଅନ୍ୟାନ୍ୟ ଉପାଦାନରୁ ପ୍ରାପ୍ତ ଓ ମାଦଳାପାଞ୍ଜିରୁ ପ୍ରାପ୍ତ ଗଙ୍ଗ ଇତିହାସରେ କି କି ମୌଳିକ ପାର୍ଥକ୍ୟ ଅଛି, ଏଠାରେ ତାହା ବର୍ତ୍ତମାନ ପ୍ରକାଶ କରିବା ସମ୍ଭବ ନୁହେ । କିନ୍ତୁ ପାଞ୍ଜିରୁ ପ୍ରାପ୍ତ ଗଙ୍ଗବଂଶର ଇତିହାସ ସମ୍ବନ୍ଧରେ ଯେଉଁ କେତୋଟି ଘଟନା ଉପରେ ଉଲ୍ଲେଖ କରାଗଲା, କେବଳ ସେହି ଘଟନାଗୁଡ଼ିକ ଉପରେ ନିର୍ଭର କରି ନିଃସନ୍ଦେହରେ କୁହାଯାଇ ପାରେ ଯେ ମାଦଳାପାଞ୍ଜୀ ଗଙ୍ଗରାଜତ୍ୱ ମଧ୍ୟରେ ଲେଖା ହୋଇ ନଥିଲା । ପାଞ୍ଜୀରୁ ପ୍ରାପ୍ତ ଉଲ୍ଲିଖିତ ଘଟନା ଗୁଡିକ ଖାଲି ଅସତ୍ୟ ନୁହେଁ; କଳଙ୍କ ଓ କୁତ୍ସା-ପୂର୍ଣ୍ଣ ମଧ୍ୟ । ଗଙ୍ଗବଂଶର ଜଣେ ମାତ୍ର ରାଜା ବଞ୍ଚିଥିବା ପର୍ଯ୍ୟନ୍ତ ଏପରି ଘଟନା ଆଦୌ ଲିପିବଦ୍ଧ ହୋଇ ପାରି ନ ଥିବ । ଯୁକ୍ତି-ଛଳରେ ଯଦି ଧରାଯାଏ ଯେ ପାଞ୍ଜୀ ବର୍ଣ୍ଣିତ ଏହି ଘଟନାଗୁଡିକ ସତ୍ୟମୂଳକ, ତଥାପି ସୁଦ୍ଧା ସ୍ୱୀକାର କରିବାକୁ ହେବ ଯେ ମାଦଳା ପାଞ୍ଜୀ ଗଙ୍ଗରାଜତ୍ୱରେ ଲେଖା ହୋଇ ନଥିଲା । ସତ୍ୟ ହେଉ, ବା ଅସତ୍ୟ ହେଉ ବିଦ୍ୟମାନ ରାଜବଂଶ ସମ୍ବନ୍ଧରେ କୌଣସି କଳଙ୍କ ଓ କୁତ୍ସାପୂର୍ଣ୍ଣ ଲେଖା ପ୍ରକାଶ କଲେ ପ୍ରକାଶକାରୀଙ୍କ ଶିରଚ୍ଛେଦ ଛଡ଼ା ଅନ୍ୟ ଦଣ୍ଡ ପ୍ରାଚୀନ କାଳରେ ନଥିଲା । ଏଠାରେ ଉଲ୍ଲେଖ ଯୋଗ୍ୟ ଯେ ମାଦଳାପାଞ୍ଜୀ କାହାର ବ୍ୟକ୍ତିଗତ ଗ୍ରନ୍ଥ ବା ଗୁପ୍ତ ବିଦ୍ୟା ନଥିଲା । ସର୍ବସାଧାରଣଙ୍କ ସମ୍ପତ୍ତି ରୂପେ ଏହା ଜଗନ୍ନାଥ ମନ୍ଦିରରେ ରକ୍ଷିତ ହୋଇ ଆସୁଥିଲା । ଏଣୁ ଏଥିରେ ଯାହା ଲେଖା ହେଉଥିଲା, ତାହା ରାଜାମାନଙ୍କର ଦୃଷ୍ଟିଗୋଚର ବା କର୍ଣ୍ଣଗୋଚର ହେଉ ନଥିଲା ବୋଲି ଭାବିବାର କୌଣସି କାରଣ ନାହିଁ ।

ଠିକ୍ ଏହିପରି କାରଣମାନଙ୍କରୁ ମାଦଳାପାଞ୍ଜି ସୂର୍ଯ୍ୟବଂଶ ରାଜତ୍ୱରେ ସୁଦ୍ଧା ଲିପିବଦ୍ଧ ହୋଇ ନ ଥିଲା ବୋଲି ପ୍ରମାଣ କରା-ଯାଇ ପାରେ । ସୂର୍ଯ୍ୟବଂଶ ୧୪୩୫ ଖ୍ରୀଷ୍ଟାବ୍ଦରୁ ଆରମ୍ଭ ହୋଇଥିଲା ଓ ଏହାର ସ୍ଥାପୟିତା କପିଳେନ୍ଦ୍ରଦେବ ଖାରବେଳଙ୍କ ପରି ଜଣେ ଅଦ୍ୱିତୀୟ ବୀରପୁରୁଷ ଥିଲେ । ନିଜ ବାହୁବଳରେ ଉତ୍ତରରେ ହୁଗୁଳି ନଦୀ ଠାରୁ ଦକ୍ଷିଣରେ ଦକ୍ଷିଣ ଆର୍କଟ ଓ ତାଞ୍ଜୋରଜିଲ୍ଲା ପର୍ଯ୍ୟନ୍ତ ସେ ଓଡ଼ିଶା ସାମ୍ରାଜ୍ୟ ବିସ୍ତାର କରିଥିଲେ । କିନ୍ତୁ ମାଦଳା-ପାଞ୍ଜୀ ଏହି ପ୍ରବଳ ପ୍ରତାପୀ ବୀରପୁରୁଷଙ୍କ ବାଲ୍ୟଜୀବନ ଅତି କୁତ୍ସିତ ରୂପେ ବର୍ଣ୍ଣନା କରିଛନ୍ତି । ପାଞ୍ଜୀରେ ଲେଖା ଅଛି— "ମତ୍ତଭଣ୍ଡଦେବ ଦିନେ ପ୍ରମେଶ୍ୱରଙ୍କୁ ଜଣାଇଲେ ମୋହ ଉତ୍ତାରୁ କାହାକୁ କରିଛ ଗୋସାଇଁ । ଏଥକୁ ସପନେ ଆଜ୍ଞା ହୋଇଲେ କାଲି ଦରଶନ ବେଳେ ବିମ୍ବଳାଇଙ୍କ ଆଗେ ଯେପରି ଖଣ୍ଡେ ଛୋରୁ-ଥିବ, ତତେ ଦେଖି ପଳାଇ ଯିବ, ସେହି ତାକୁ କରିଅଛୁ(ପୃ ୫୨) ।" ଏହି ଗପରଚିଠା କପିଳ ବା କପିଳି ଜଣେ ବ୍ରାହ୍ମଣ ଘରେ ବାଛୁରି ଚରାଉଥିଲେ । ଦିନେ ବ୍ରାହ୍ମଣ ଦେଖିଲେ··· "କପିଳ ଗଛମୂଳେ ଶୋଇଛନ୍ତି । ମୁହଂରେ ଖରା ପଡ଼ିଲାକୁ ନାଗସାପ ଫେଣ ଟେକିଅଛି (ପୃ ୫୨) ।" ପାଞ୍ଜୀକାର କପିଳଙ୍କୁ ଖାଲି ଗପରଚିଠା ଓ ଗୋରୁ ଜଗୁଆଳ କରି ସନ୍ତୁଷ୍ଟ ହୋଇ ନାହାନ୍ତି; ସେ ଯେ ଚୋର ଥିଲେ ତାହା ମଧ୍ୟ ପ୍ରକାଶ କରିଛନ୍ତି । "ବନମାଳୀ ଦାସ ପୁଅ କାଶୀଦାସ ପୂର୍ବ ଚୋରୀ ବିଦ୍ୟାରେ ରାଜାଙ୍କ ସାଙ୍ଗ ଥିଲେ (ପୃ ୫୫) ।" ଏଣୁ କପିଳେନ୍ଦ୍ର ରାଜା ହେବା ପରେ ସୁଦ୍ଧା ତାକୁ ନ ପଚାରିବାରୁ କାଶି ଦାସ ଦିନେ ରାଜାଙ୍କ ନଅରରେ ସିନ୍ଧି କାଟି ଅନେକ ପଦାର୍ଥ ନେଇ ଗଲା । ସକାଳୁ ଉଠି କପିଳେନ୍ଦ୍ର ସିନ୍ଧିଗାତ ମାପି ଜାଣି ପାରିଲେ ଯେ ସେ ଗାତଟି ତାଙ୍କର ଚୋରସାଥୀ କାଶିଦାସର କୀର୍ତ୍ତି ।

ଏଣୁ ତାଙ୍କୁ ଡ଼ାକ ଆଣି ପୁରସ୍କୃତ କଲେ । ପାଞ୍ଜୀରେ କପିଳେନ୍ଦ୍ରଙ୍କ ଜୀବନୀ ସମ୍ବନ୍ଧରେ ଯାହା ଲେଖା ଅଛି ତାହା ସତ୍ୟ ନୁହେଁ । ସେ ବାଲ୍ୟ ଜୀବନରେ ଦରିଦ୍ର ହୋଇପାରନ୍ତି, କିନ୍ତୁ ଯୌବନରେ ସେ ଗଙ୍ଗବଂଶର ଶେଷ ରାଜା ଚତୁର୍ଥ ଭାନୁଦେବଙ୍କ ଅଧୀନରେ ପ୍ରଥମେ ମହାପାତ୍ର ଉପାଧିଧାରୀ ଉଚ୍ଚ କର୍ମଚାରୀ ଥିଲେ ଏବଂ ପରଶେଷରେ ତାଙ୍କର ସୈନ୍ୟାଧ୍ୟକ୍ଷ ମଧ୍ୟ ଥିଲେ । ଭାନୁ-ଦେବଙ୍କୁ ଦୁର୍ବଳ ଦେଖି ଓ ଓଡ଼ିଶାକୁ ମୁସଲମାନ ଆକ୍ରମଣରେ ଧ୍ୱସ୍ତ ବିଧ୍ୱସ୍ତ ଦେଖି ପ୍ରବଳ ପରାକ୍ରମୀ କପିଳେନ୍ଦ୍ର ବଳପୂର୍ବକ ଉତ୍କଳର ସିଂହାସନ ଅଧିକାର କରିଥିଲେ ।

ଗଙ୍ଗବଂଶାନୁ ଚରିତ ନାମକ ସଂସ୍କୃତ ନାଟକରେ ବର୍ଣ୍ଣିତ ଅଛି ଯେ ଗଙ୍ଗବଂଶ ଶେଷରାଜା ଚତୁର୍ଥ ଭାନୁଦେବ ଦକ୍ଷିଣରେ ଯୁଦ୍ଧ ବ୍ୟାପୃତ ଥିବାବେଳେ ତାଙ୍କ ଅନୁପସ୍ଥିତରେ ତାଙ୍କ ଅମାତ୍ୟ କପିଳେନ୍ଦ୍ର ବଳପୂର୍ବକ ଉତ୍କଳର ସିଂହାସନ ଅଧିକାର କଲେ । ଭାନୁଦେବ ଦକ୍ଷିଣରୁ ଫେରି ପୁଣି ସିଂହାସନ ଅଧିକାର କରିବାକୁ ଚେଷ୍ଟା କରିଥିଲେ, ମାତ୍ର ତାଙ୍କ ଚେଷ୍ଟା ବିଫଳ ହେଲା । ସେ ଗୋଡ଼ାରୀ କଟକକୁ ରାଜଧାନୀ କରି ଗୋଟିଏ କ୍ଷୁଦ୍ର ରାଜ୍ୟ ସ୍ଥାପନ କଲେ ଓ ସେଠାରେ ଜୀବନର ଅବଶିଷ୍ଟାଂଶ ଯାପନ କଲେ । ଗୋଡ଼ାରୀ କଟକରେ ମୂଳ ଗଙ୍ଗବଂଶର ରାଜାମାନେ ରାଜତ୍ୱ କରିବାକୁ ଲାଗିଲେ ଓ ଏହି ରାଜବଂଶୀୟ ପୁରୁଷୋତ୍ତମ ଦେବ ଗଙ୍ଗବଂଶାନୁ ଚରିତର ରଚୟିତାଙ୍କ ପୃଷ୍ଠପୋଷକ ଥିଲେ । ଗଙ୍ଗ-ବଂଶାନୁ ଚରିତରେ କପିଳେନ୍ଦ୍ରଙ୍କ ସିଂହାସନ ଲାଭ ସମ୍ବନ୍ଧରେ ଯାହା ବର୍ଣ୍ଣିତ ଅଛି, ତାହା ପ୍ରକୃତରେ ବିଶ୍ୱାସଯୋଗ୍ୟ । ଯୁଗେ ଯୁଗେ ପ୍ରବଳ ଅମାତ୍ୟମାନଙ୍କ ଦ୍ୱାରା ଦୁର୍ବଳ ରାଜାମାନେ ସିଂହାସନ

ଜ୍ଞାତ ହୋଇଥାନ୍ତି । କପିଳେନ୍ଦ୍ର ଏହି ରୀତିରେ ସିଂହାସନ ଲାଭ କରିଥିଲେ । ମାଦଳା ପାଞ୍ଜିରେ ବର୍ଣ୍ଣିତ ଅଛି ଯେ ଗଙ୍ଗବଂଶର ଶେଷ ରାଜା ମତ୍ତଭାନୁଦେବ କପିଳେନ୍ଦ୍ରଙ୍କୁ ଜଗନ୍ନାଥଙ୍କ ଆଜ୍ଞାରେ ପୁଷ୍ୟପୁତ୍ର କରିଥିଲେ । ଏହା ଏକାବେଳକେ କାଳ୍ପନିକ କଥା । ଯଦି କପିଳେନ୍ଦ୍ର ଗଙ୍ଗବଂଶୀୟ ରାଜାଙ୍କ ପୁଷ୍ୟପୁତ୍ର ହୋଇଥିଲେ, ତାହାହେଲେ ତାଙ୍କ ବଂଶର ନାମ ମଧ୍ୟ ଗଙ୍ଗବଂଶ ହୋଇଥାନ୍ତା । କିନ୍ତୁ ଗୋପୀନାଥପୁର ଶିଳାଲେଖରେ ସ୍ପଷ୍ଟଭାବରେ ଉଲ୍ଲେଖ ଅଛି ଯେ କପିଳେନ୍ଦ୍ର ଓଡ଼ିଶାରେ ସୂର୍ଯ୍ୟବଂଶ ସ୍ଥାପନ କରିଥିଲେ । ବସ୍ତୁତଃ ତାଙ୍କ ବଂଶୀୟ ରାଜାମାନେ ନିଜକୁ ସୂର୍ଯ୍ୟବଂଶୀ ବୋଲି ପରିଚୟ ଦେଇ ଯାଇଛନ୍ତି । ଏଣୁ ଏହାହିଁ ପ୍ରମାଣିତ ହୁଏ ଯେ ମାଦଳାପାଞ୍ଜୀ ଲିଖିତ ହେବା ବେଳକୁ କପିଳେନ୍ଦ୍ର କିମ୍ବଦନ୍ତୀର ବସ୍ତୁ ହୋଇସାରି ଥିଲେ । ତାଙ୍କ ସମ୍ବନ୍ଧରେ ଯେଉଁ କିମ୍ଭୂତ କିମାକାର କିମ୍ବଦନ୍ତୀ ପ୍ରଚଳିତ ଥିଲା, ତାହାହିଁ ପାଞ୍ଜୀକାର ଲେଖି ଯାଇଛନ୍ତି । ମାଦଳାପାଞ୍ଜୀ କପିଳେନ୍ଦ୍ର ବା ତାଙ୍କ ପୁତ୍ରପୌତ୍ରଙ୍କ ସମସାମୟିକ ଲେଖା ହୋଇ ନ ପାରେ ।

ଗଙ୍ଗବଂଶର ପ୍ରଥମ ରାଜାଙ୍କୁ ଚଣ୍ଡୀପୁଅ ଓ ସୂର୍ଯ୍ୟବଂଶର ପ୍ରଥମ ରାଜାଙ୍କୁ ଗୋପରଚଣ୍ଠା ଓ ଗୌରର ଇତ୍ୟାଦି ରୂପେ ବର୍ଣ୍ଣନା କରିବା ପରେ ଭୋଇ ବଂଶର ପ୍ରଥମରାଜା ରାମଚନ୍ଦ୍ର ଦେବଙ୍କ ସମ୍ବନ୍ଧରେ ପଞ୍ଜିକାର କଅଣ ଲେଖିଛନ୍ତି, ତାହା ବର୍ତ୍ତମାନ ବିଚାର କରାଯାଉ । ପାଞ୍ଜୀକାର ରାମଚନ୍ଦ୍ର ଦେବଙ୍କ ସମ୍ବନ୍ଧରେ ଅଟମ୍ବ କହିଛନ୍ତି — “ଯଦୁବଂଶ ରାଜାଏ ଏଣେ ଉଦିତ ହୋଇଲେ । ଦନେଇ ବିଦ୍ୟାଧରଙ୍କ ପୁଅ ତୋଠମୀ ଗଡ଼ରେ ଥିଲେ । ରାମଚନ୍ଦ୍ର ଦେବ ରାଜା ହୋଇଲେ । ବଡ଼ ପ୍ରତାପୀ ରାଜା ହୋଇଲେ (ପୃ ୫୬) ।” ଭୋଇ

ବଂଶ ରାଜତ୍ୱ ବେଳକୁ ଓଡ଼ିଶା ମୋଗଲମାନଙ୍କ କରଗତ ହୋଇ ସାରିଥିଲା ଓ ଗଙ୍ଗା ଠାରୁ ତାଞ୍ଜୋର ପର୍ଯ୍ୟନ୍ତ ବିସ୍ତୃତ ଗଜପତିଙ୍କ ଅଧିକାର ସଙ୍କୁଚିତ ହୋଇ ପୁରୀ ଓ ଖୋର୍ଦ୍ଧା ମଧ୍ୟରେ ସୀମାବଦ୍ଧ ହୋଇ ସାରିଥିଲା । ଏଣୁ ରାମଚନ୍ଦ୍ରଦେବ "ବଡ଼ ପ୍ରତାପୀ ରାଜା ହୋଇଲେ" ବୋଲି ପାଞ୍ଜିକାର କହିଲେ କେହି ବିଶ୍ୱାସ କରିବେ ନାହିଁ । ତା ଛଡ଼ା, ଭୋଇରାଜମାନେ କରଣବଂଶୀୟ ଥିଲେ ବୋଲି ସମସ୍ତ ଐତିହାସିକ ସ୍ୱୀକାର କରିଛନ୍ତି । ଭୋଇମାନେ ଯେ କରଣବଂଶୀୟ ଥିଲେ, ଏହାର ବିଶଦ ବିବରଣ ଓ ବଂଶାବଳୀ ଶ୍ରୀଯୁକ୍ତ ସୁଧାକର ପଟ୍ଟନାୟକ ନିକଟରେ ବହୁ ଭାବରେ ଆଲୋଚନା କରିଛନ୍ତି । ବାଲେଶ୍ୱର ଜିଲ୍ଲାର ଶ୍ରୀଜଙ୍ଗଗ୍ରାମରୁ ପ୍ରାପ୍ତ ଶିଳାଲେଖରେ ଭୋଇବଂଶୀୟ ରାଜାମାନଙ୍କୁ "ଶୂଦ୍ରନୃପତି" ବୋଲି କୁହାଯାଇଛି । ଏପରି ସ୍ଥଳେ ପାଞ୍ଜିକାର ଭୋଇବଂଶର ପ୍ରଥମରାଜା ରାମଚନ୍ଦ୍ରଦେବଙ୍କୁ ଯଦୁବଂଶ କ୍ଷତ୍ରୀୟ ଓ ବଡ଼ ପ୍ରତାପୀ ରାଜା ବୋଲି ଏପରି ଲେଖିଛନ୍ତି କାହିଁକି ? ଏ ପ୍ରଶ୍ନର ଏକମାତ୍ର ଉତ୍ତର ଏହି ଯେ ମାଦଳାପାଞ୍ଜୀ ଭୋଇବଂଶ ଅମଳରେ ଅର୍ଥାତ୍ ଷୋଡ଼ଶ ଶତାବ୍ଦୀର ଶେଷ ଅଡ଼କୁ ଲିଖିତ ହୋଇଥିଲା । ପାଞ୍ଜୀକାର ରାମଚନ୍ଦ୍ରଦେବ ବା ତଦୀୟ ବଂଶଧରମାନଙ୍କ ସମସାମୟିକ ଥିଲେ । ମାଦଳାପାଞ୍ଜୀ ଲେଖା ହେବା ବେଳକୁ ଯେଉଁ ରାମଚନ୍ଦ୍ରଦେବ କାମ୍ବଦନ୍ତୀର ବ୍ୟକ୍ତି ହୋଇ ନଥିଲେ; ନଚେତ୍ ତାଙ୍କ ମଧ୍ୟ ପାଞ୍ଜୀକାର କାମ୍ବଦନ୍ତୀ ଅବଲମ୍ବନରେ କମ୍ବୁତ କମାକାର ରୂପେ ଉପସ୍ଥାପିତ କରିଥାନ୍ତେ । ପ୍ରଥିତଯଶା ଓ ପ୍ରବଳ ପରାକ୍ରମ ଗଙ୍ଗବଂଶ ଓ ସୂର୍ଯ୍ୟବଂଶରେ ଉତ୍ପତ୍ତି ସମ୍ବନ୍ଧରେ କମ୍ବୁତ କମାକାର ଗଳ୍ପ ଲେଖିଯାଇବା ପରେ ପରାଧୀନ ଦୁର୍ବଳ, ଅଖ୍ୟାତନାମା ଓ ଭୂତସର୍ବସ୍ୱ ଭୋଇବଂଶକୁ ଯଦୁବଂଶ ବୋଲି ଉପସ୍ଥାପିତ କରିବା ଦ୍ୱାରା ସମସାମୟିକ ଭୋଇରାଜାମାନଙ୍କ

ପ୍ରତି ପାଞ୍ଜୀକାରଙ୍କ ଅନୁଗତ୍ୟ ଓ ଭୟ ତାଙ୍କ ଲେଖାରୁହିଁ ଦେବା-ଲୋକ ପରି ସ୍ପଷ୍ଟ ହୋଇ ପଡ଼ୁଛି । ଏଣୁ ମୋଗଲ୍ ସମ୍ରାଟ ଆକବରଙ୍କ ପ୍ରତିନିଧି ମାନସିଂହ ଠାରେ ଭୋଇରାଜା ରାମଚନ୍ଦ୍ର ଦେବଙ୍କ ଖୋର୍ଦ୍ଧା ଗାଦି ପ୍ରତି ସତ୍ତ୍ୱ ପ୍ରତିପାଦନ କରିବାପାଇଁ ମାଦଳାପାଞ୍ଜୀ ଲିଖିତ ଓ ଉପସ୍ଥାପିତ ହୋଇ ଥିଲ ବୋଲି ଯେଉଁ ପ୍ରବାଦ ଅଛି, ତାହା ସତ୍ୟାଶ୍ରିତ ।

ମୋଗଲ ରାଜତ୍ୱରେ ମାଦଳାପାଞ୍ଜୀ ଲିଖିତ ହୋଇଥିବାରୁ ଏଥିରେ ମୂଳରୁ ଶେଷ ପର୍ଯ୍ୟନ୍ତ ଅମ୍ବର (ଅମିର୍), ପାତସା (ପାତ୍‌ଶା ବା ବାଦ୍‌ସା), ମୋଗଲ, ପଠାଣ, ନବାବ, ଜମିଦାର, ଲସ୍କର, ଫଉଜ ଇତ୍ୟାଦି ଶବ୍ଦ ବାରମ୍ବାର ବ୍ୟବହୃତ ହୋଇଥିବା ଅତ୍ୟନ୍ତ ସ୍ୱାଭାବିକ ହୋଇଛି । ମାଦଳାପାଞ୍ଜୀର ପ୍ରଥମାଂଶରେ ଥିବା ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀର ଚୋଡ଼ଗଙ୍ଗ ଦେବଙ୍କ ଅମଳର ଅତି ପ୍ରାଚୀନ ଭାଷା ବୋଲି କେହି କେହି କହିଛନ୍ତି, କିନ୍ତୁ ଏପରି ସିଦ୍ଧାନ୍ତ ଭ୍ରମପୂର୍ଣ୍ଣ । ମାଦଳା ପାଞ୍ଜୀରେ ସତ୍ୟଯୁଗ ଠାରୁ ଆରମ୍ଭ କରି ବ୍ରିଟିଶ୍ ରାଜତ୍ୱ ପର୍ଯ୍ୟନ୍ତ ଓଡ଼ିଶାର ଇତିହାସ ଅଛି. କିନ୍ତୁ ଏହାର ଭାଷା ରେ କ୍ରମପରିବର୍ତ୍ତନର କୌଣସି ଚିହ୍ନ ନାହିଁ । ଚୋଡ଼ଗଙ୍ଗଙ୍କ ରାଜତ୍ୱର ଘଟନାବଳୀ ବର୍ଣ୍ଣନା କରିବାରେ ପାଞ୍ଜୀକାର ଯେଉଁ ଭାଷା ବ୍ୟବହାର କରିଛନ୍ତି, ଭୋଇ ରାଜା ରାମଚନ୍ଦ୍ର ଦେବଙ୍କ ରାଜତ୍ୱର ଘଟନାବଳୀ ବର୍ଣ୍ଣନା କରିବାରେ ମଧ୍ୟ ଠିକ୍ ସେହି ଭାଷା ବ୍ୟବହାର କରିଛନ୍ତି । ମାଦଳା ପାଂଜୀର ଯେଉଁ ଅଂଶରେ ବ୍ରିଟିଶ୍ ରାଜତ୍ୱର ଘଟଣାବଳୀ ଲିଖିତ ଅଛି, କେବଳ ସେହି ଅଂଶରେହିଁ ଭାଷାର ପରିବର୍ତ୍ତନ ଦେଖାଯାଏ । ମାଦଳାପାଂଜୀ ଯେବେ ଚୋଡ଼ଗଙ୍ଗ-ଦେବଙ୍କ ରାଜତ୍ୱ ଠାରୁ କ୍ରମାନ୍ୱୟରେ ଲେଖା ହୋଇ ଆସିଥାନ୍ତା,

ତାହାହେଲେ ଏହାର ଭାଷାରେ ମଧ୍ୟ କ୍ରମ ପରିବର୍ତ୍ତନ ଅବଶ୍ୟମ୍ଭାବୀ ହୋଇ ପଡ଼ିଥାନ୍ତା । କେହି କେହି ମାଦଳାପାଞ୍ଜିରେ ଥିବା ଭାଷାର ଭ୍ରମକୁ ତାର ପ୍ରାଚୀନତ୍ୱ ବୋଲି ଭାବିଥାନ୍ତି, କିନ୍ତୁ ସେମାନେ ଭୁଲି ଯାଆନ୍ତି ଯେ ପାଞ୍ଜିକାର ସଂସ୍କୃତ ବା ଓଡ଼ିଆ ଭାଷାରେ କିମ୍ବା ତାମ୍ର-ପତ୍ର ଓ ଶିଳାଲିପିର ଭାଷାରେ ପାରଦର୍ଶୀ ନଥିଲେ । ତାଙ୍କ ଭାଷାରେ ବର୍ଣ୍ଣାଶୁଦ୍ଧି ମଧ୍ୟ ନାହିଁ । ଭାଷାର ଅଜ୍ଞତାକୁ ପ୍ରାଚୀନତା ବୋଲି ଭାବିବାର କୌଣସି କାରଣ ନାହିଁ । ଉତ୍କଳର ପ୍ରସିଦ୍ଧ ପଞ୍ଚସଖା ସମସାମୟିକ ଥିଲେ, ମାତ୍ର ସେମାନଙ୍କ ଲେଖାମାନଙ୍କରେ ଥିବା ଭାଷାରେ ଏକତ୍ୱ ବା ସାମ୍ୟ ନାହିଁ । ଜଗନ୍ନାଥ ଦାସଙ୍କ ମାର୍ଜିତ ଭାଷାକୁ ଅପେକ୍ଷାକୃତ କମ୍ ପ୍ରାଚୀନ ଓ ଅନ୍ୟାନ୍ୟ ସଖାଙ୍କ ଭାଷାକୁ ବହୁତ ପ୍ରାଚୀନ ବୋଲି ଭାବିଲେ ମହା ଭ୍ରମରେ ପଡ଼ିବାକୁ ହେବ ।

ମାଦଳା ପାଞ୍ଜିର ମୂଳରୁ ଭୋଇରାଜତ୍ୱ ପର୍ଯ୍ୟନ୍ତ ଥିବା ସମସ୍ତ ଇତିହାସ ଯେ ଏକ ସମୟରେ ଲେଖା ହୋଇଥିଲା, ତାର ଅନ୍ୟାନ୍ୟ ପ୍ରମାଣ ମଧ୍ୟ ଏହି ପାଞ୍ଜି ମଧ୍ୟରେ ରହିଛି । "ମାଦଳା-ପାଞ୍ଜି ମତରେ ରକ୍ତବାହୁର ଅଭିଯାନ ଖ୍ରୀଷ୍ଟାବ୍ଦ ଚତୁର୍ଥ ଶତାବ୍ଦୀରେ ଘଟିଥିଲା; କିନ୍ତୁ ପାଞ୍ଜିରେ ରକ୍ତବାହୁକୁ ଅମୁରା ବା ଅମିର୍ ଆଖ୍ୟା ଦିଆ ହୋଇଛି ଓ ଏହି ବଂଶର ରାଜତ୍ୱକୁ ମୋଗଲରାଜତ୍ୱ ବୋଲି କୁହାଯାଇଛି । ଚତୁର୍ଥ ଶତାବ୍ଦୀରେ ଓଡ଼ିଶାରେ କାହିଁକି ଭାରତ-ବର୍ଷରେ ମଧ୍ୟ ମୋଗଲ ଓ ଅମିର୍ ଶବ୍ଦ ବ୍ୟବହୃତ ହୋଇ ନ ଥିଲା । ଯେଉଁ ସମୟର ଘଟଣା ସେ ସମୟରେ ହିଁ ଯଦି ମାଦଳା-ପାଞ୍ଜି ଲିଖିତ ହୋଇଥାନ୍ତା, ତାହାହେଲେ ଏ ଶବ୍ଦଗୁଡ଼ିକ କଦାପି ବ୍ୟବହୃତ ହୋଇପାରି ନଥାନ୍ତା । କେଶରୀବଂଶର ଶେଷ ରାଜାଙ୍କ ସହିତ ତାଙ୍କ ଅମାତ୍ୟ ବାସୁଦେବରଥଙ୍କ କଳହ ପ୍ରସଙ୍ଗରେ

ମାଂଜୀକାର ପଠାଣ ଶବ୍ଦଟି ବ୍ୟବହାର କରିଛନ୍ତି । ତା ଛଡ଼ା, ଅନଙ୍ଗଭୀମଦେବ ଯେଉଁ ମୁଦ୍ରାଲ କରିଥିଲେ, ସେଥିରେ ସେ ନିଜକୁ "କଲବର୍ଗେଶ୍ବର" ବୋଲି ଅଭିହିତ କରିଥିବା କଥା ମଧ୍ୟ ପାଂଜୀକାର ଲେଖିଛନ୍ତି । ବାହମନି ରାଜ୍ୟର ଦ୍ୱିତୀୟ ରାଜଧାନୀର ନାମ ଥିଲା କୁଲ୍‌ବର୍ଗ ଓ କୁଲ୍‌ବର୍ଗ ବା ଗୁଲବର୍ଗ ଶବ୍ଦରୁ କଲବର୍ଗ ଶବ୍ଦଟି ଉତ୍ପନ୍ନ ହୋଇଛି । ଚତୁର୍ଦ୍ଦଶ ଶତାବ୍ଦୀ ପୂର୍ବରୁ ମୁସଲମାନ୍‌ମାନଙ୍କ ବାହାମନି ରାଜ୍ୟର ଅସ୍ତିତ୍ୱ ନ ଥିଲା । ଏପରିସ୍ଥଳେ ଦ୍ୱାଦଶ ଶତାବ୍ଦୀର ଗଙ୍ଗବଂଶୀୟ ରାଜା ଅନଙ୍ଗଭୀମଦେବ କୁଲ୍‌ବର୍ଗ ବା ଗୁଲ୍‌ବର୍ଗ ଅଧିକାର କରି କଲବର୍ଗେଶ୍ବର ଉପାଧି ଧାରଣ କଲେ କିପରି ? ପ୍ରକୃତ କଥା ଏହି ଯେ କପିଳେନ୍ଦ୍ରଦେବ କୁଲ୍‌ବର୍ଗ ଅଧିକାର କରି ତା ଆକ୍ରମଣ କରି କଲବର୍ଗେଶ୍ବର ଉପାଧି ଧାରଣ କରିଥିଲେ । ସୂର୍ଯ୍ୟବଂଶର ପରବର୍ତ୍ତୀ ଭୋଇରାଜାମାନେ ଏପରକି ଆଧୁନିକ ପୁରୀ-ରାଜାମାନେ ମଧ୍ୟ ଏହି ଉପାଧି ଗର୍ବର ସହିତ ବହନ କରି ଆସିଛନ୍ତି । ଷୋଡଶ ଶତାବ୍ଦୀର ଶେଷ ଭାଗରେ ମାଦଳାପାଂଜୀ ଲିଖିତ ହେବା ବେଳକୁ ଓଡ଼ିଶାର ଗଜପତିମାନେ ଯେଉଁ ଉପାଧି ବହନ କରୁଥିଲେ, ପାଂଜୀକାର ତାହା ଅନଙ୍ଗଭୀମଦେବଙ୍କ ଠାରେ ଯୋଡ଼ି ଦେଇଛନ୍ତି ।

ଏହିପରି ଆଲୋଚନା କଲେ ପ୍ରମାଣିତ ହୁଏ ଯେ ମାଦଳା-ପାଂଜୀର ଲେଖା ଭୋଇବଂଶ ଅମଳରୁ ଆରମ୍ଭ ହୋଇଥିଲା । ଏହି ଭୋଇବଂଶ ଠାରୁ ଶେଷ ପର୍ଯ୍ୟନ୍ତ ମାଦଳାପାଂଜୀରେ ଯାହା ଲେଖା ଅଛି, ତାହା ପ୍ରକୃତ ଇତିହାସ; ଏଣୁ ଅନ୍ୟାନ୍ୟ ଉପାଦାନରୁ ପ୍ରାପ୍ତ ଇତିହାସ ସହିତ ଏହାର ପ୍ରାୟ ଅମେଳ ନାହିଁ । କିନ୍ତୁ ଷୋଡଶ ଶତାବ୍ଦୀ ପୂର୍ବରୁ ଯେଉଁ ଘଟଣାମାନ ପାଂଜୀରେ ଲିଖିତ ହୋଇଛି, ତାହା କିମ୍ବଦନ୍ତୀ । ଏଣୁ ପ୍ରକୃତ ଇତିହାସ ସହିତ ତାର ଅମେଳ

ରହିବା ସ୍ୱାଭାବିକ ହୋଇ ପଡ଼ୁଛି । କମ୍ବଦନ୍ତୀର ପ୍ରଧାନ ଲକ୍ଷଣ ଏହି ଯେ ତାହା ଅସତ୍ୟ, ଅତିରଂଜନ ଓ ଅତି ଭୌତିକତାର ଆବରଣ ତଳେ ଐତିହାସିକ ସତ୍ୟକୁ ପ୍ରଚ୍ଛନ୍ନ କରିପକାଏ । ମାଦଳାପାଂଜୀରେ ଲିଖିତ ଷୋଡ଼ଶ ଶତାବ୍ଦୀ ପୂର୍ବରୁ ଘଟନା-ମାନଙ୍କରେ କମ୍ବଦନ୍ତୀର ଏହି ଲକ୍ଷଣ ରହିଛି; ଏଣୁ ପାଂଜୀର ଏହି ଅଂଶକୁ ଇତିହାସ ନ କହି କମ୍ବଦନ୍ତୀ ବୋଲି କହିବାକୁ ହେବ ।



# କେଶରୀବଂଶ ଓ ସୋମବଂଶ ।

ତାମ୍ର ଓ ଶିଳାଲେଖରୁ ଯେଉଁ ସୋମବଂଶ ମିଳେ, ତାହା ମାଦଳାପାଞ୍ଜୀର କେଶରୀ ବଂଶ ବୋଲି ଅନେକ ଐତିହାସିକ କହି ଆସିଛନ୍ତି । ସୋମବଂଶୀ ରାଜାମାନଙ୍କ ଆଜି ପର୍ଯ୍ୟନ୍ତ ସର୍ବମୋଟ ୨୦ଟି ତାମ୍ର ଓ ଶିଳା ଲେଖ ପ୍ରକାଶିତ ହୋଇଛି । ପ୍ରଥମେ ପ୍ରଥମେ ଏମାନଙ୍କ ବଂଶାବଳୀ ସମ୍ବନ୍ଧରେ କେତେକ ଭ୍ରମ ଉପୁଜି ଥିଲେ ମଧ୍ୟ, ଏହି ବଂଶର ଅନେକ ଗୁଡ଼ିଏ ପ୍ରାଚୀନ ଲେଖ ମିଳିବା ପରେ ଏହି ଭ୍ରମ ଦୂର ହୋଇଛି । କିନ୍ତୁ କେଉଁ ରାଜାଙ୍କ ପରେ କେଉଁ ରାଜା ରାଜତ୍ୱ କରିଥିଲେ ତାହା ନିଶ୍ଚିତ ରୂପେ ଜଣା ଗଲେ ମଧ୍ୟ, ଏମାନେ କେଉଁ କେଉଁ ଶତାବ୍ଦୀରେ ଓ କେତେ ବର୍ଷ ଧରି ରାଜତ୍ୱ କରିଥିଲେ, ତାହା ସ୍ଥିର କରିବା ସହଜ-ସାଧ୍ୟ ହୋଇନାହିଁ; କାରଣ ସୋମବଂଶୀ ରାଜାମାନଙ୍କ ତାମ୍ର ବା ଶିଳାଲେଖମାନଙ୍କରେ କୌଣସି ସମ୍ବତ୍ ବା ଅବ୍ଦ ନାହିଁ; ରାଜାମାନଙ୍କର ଖାଲି ଅଙ୍କ ବା ଶାସନ କାଳର ବର୍ଷ ମାନ ଲିଖିତ ଅଛି । ଏପରିସ୍ଥଳେ ଏମାନଙ୍କ ସମୟ ନିର୍ଦ୍ଧାରଣ ପାଇଁ ଦୁଇଟି ଉପାୟ ଅବଲମ୍ବନ କରାହୋଇଛି । ପ୍ରଥମତଃ ସୋମବଂଶୀ ରାଜାମାନଙ୍କ ତାମ୍ର ଓ ଶିଳାଲେଖରେ ଥିବା ଅକ୍ଷରମାନଙ୍କ ବୟସ ନିର୍ଦ୍ଧାରଣ କରିବାର ଚେଷ୍ଟା କରାଯାଇଛି । ସ୍ୱର୍ଗୀୟ ଫ୍ଲିଟ୍ ସାହେବ ଓ କିଲ୍‌ହର୍ଣ୍ଣ ସାହେବ ସୋମବଂଶୀ ତାମ୍ର ଶାସନର ଅକ୍ଷରକୁ ୧୧ଶ ଓ ୧୨ଶ ଶତାବ୍ଦୀର ଅକ୍ଷର ବୋଲି କହିଯାଇଛନ୍ତି । କିନ୍ତୁ ଏହି ଉପାୟରେ ଠିକ୍ ସମୟ ନିର୍ଦ୍ଧାରଣ କରିବା ଏକ ପ୍ରକାର ଅସମ୍ଭବ । କାରଣ ଅକ୍ଷର ସାହାଯ୍ୟରେ ଯେଉଁ

ସମସ୍ତ ନିର୍ଦ୍ଧାରଣ କରାଯାଏ ତାହା ହେଲେ ଦେଖାଯିବ ଯେ ଏଥିରେ ସେ ତ୍ରୁଟି ହୋଇଯିବାର ସମ୍ଭାବନା ଥାଏ । ଅର୍ଥାତ୍ ଅକ୍ଷର ଚେଷ୍ଟା କଲେ ଯେଉଁ ତାମ୍ର ଶାସନକୁ ୧୦ମ ଶତାବ୍ଦୀର ବୋଲି କୁହାଯିବ, ତାହା ୯ମ ବା ୧୧ଶ ଶତାବ୍ଦୀର ମଧ୍ୟ ହୋଇପାରେ । ଏଣୁ ଦ୍ୱିତୀୟ ଉପାୟଟି ଉପରେ ପଣ୍ଡିତମାନେ ବେଶୀ ଜୋର ଦେଇଛନ୍ତି । ଦ୍ୱିତୀୟ ଉପାୟଟି ଏହି ଯେ ସୋମବଂଶୀ ରାଜାମାନଙ୍କ ସମସାମୟିକ କୌଣସି ରାଜାଙ୍କ ଠିକ୍ ସମୟ ଜଣାଥିଲେ, ତାହାର ସାହାଯ୍ୟରେ ସୋମବଂଶୀ ରାଜାମାନଙ୍କର ମଧ୍ୟ ସମୟ ନିର୍ଦ୍ଧାରଣ କରିବା ।

ଅନୁସନ୍ଧାନ ଦ୍ୱାରା ଜଣାଯାଇଛି ଯେ ଚୋଳବଂଶୀୟ ରାଜା ରାଜେନ୍ଦ୍ରଚୋଳ ୧୦୨୨ ବା ୧୦୨୩ ଖ୍ରୀଷ୍ଟାବ୍ଦରେ ଯଯାତି ନଗରରେ ଇନ୍ଦ୍ରରଥ ନାମକ ଜଣେ ସୋମବଂଶୀ ରାଜାଙ୍କୁ ପରାସ୍ତ କରି ତାଙ୍କ ବଂଶର ଲୋକମାନଙ୍କୁ ବନ୍ଦୀ କରିଥିଲେ ଓ ତାଙ୍କ ସମ୍ପତ୍ତିକୁ ଲୁଟି କରିଥିଲେ । ଏହି ଘଟନା ରାଜେନ୍ଦ୍ରଚୋଳଙ୍କ ଅନ୍ତତଃ ବାରଟି ଶିଳା ଓ ତାମ୍ରଲେଖରେ ବର୍ଣ୍ଣିତ ହୋଇଛି ଓ ଏହି ଲେଖମାନଙ୍କରେ ଶକାବ୍ଦ ବ୍ୟବହୃତ ହୋଇ ଥିବାରୁ ଆକ୍ରମଣର ସମୟ ମଧ୍ୟ ଠିକ୍ ଭାବରେ ଜଣାଯାଇଛି । ଲେଖମାନଙ୍କ ମଧ୍ୟରୁ କୌଣସି କୌଣସିଟିରେ ତାମିଲ୍ ଭାଷାରେ ଇନ୍ଦ୍ରରଥଙ୍କ ନାମ ବିକୃତ ଭାବରେ ଇନ୍ଦିରରଦ ବା ଇନ୍ଦରରଦ ଓ ଯଯାତି ନଗରର ନାମ ଅଦି ନଗର ବା ଯାଦିନଗର ବୋଲି ଲେଖାଥିଲେ ମଧ୍ୟ, କେତୋଟିରେ ସୁସ୍ପଷ୍ଟ ଭାବରେ ଇନ୍ଦ୍ରରଥ ଓ ଯଯାତି ନଗର ବୋଲି ଲେଖା ଅଛି । ଏଣୁ ୧୦୨୨ ବା ୧୦୨୩ ଖ୍ରୀଷ୍ଟାବ୍ଦରେ ରାଜେନ୍ଦ୍ରଚୋଳ ଯଯାତି ନଗରରେ ଇନ୍ଦ୍ରରଥ ନାମକ ଜଣେ ସୋମବଂଶୀ

ରାଜାଙ୍କୁ ଯେ ପରାସ୍ତ କରିଥିଲେ, ଏ ବିଷୟରେ ସନ୍ଦେହ କରିବାର ଅବକାଶ ନାହିଁ । ରାଜେନ୍ଦ୍ରଚୋଳଙ୍କ ଆକ୍ରମଣ ପୂର୍ବ ଭାରତୀୟ ଇତିହାସରେ ଗୋଟିଏ ସର୍ବାଧିକ ମହତ୍ତ୍ୱ ଓ ସ୍ମରଣୀୟ ଘଟଣା । ସେ କେବଳ ଓଡ଼ିଶା ଆକ୍ରମଣ କରିବାକୁ ଆସି ନ ଥିଲେ । ଗଙ୍ଗାରୁ ପାଣି ଆଣିବାକୁ ଯାଇଁ ଯାଇଁ ବାଟରେ ଯଯାତି ନଗର, କୋଶଳ (ଉପର ମହାନଦୀ ଉପତ୍ୟକା), ଉଡ୍ର, ଓଡ୍ଡ (ଓଡ଼ିଶା), ଦଣ୍ଡଭୁକ୍ତି (ମେଦିନୀପୁର) ଓ ଦକ୍ଷିଣରାଢ଼ (ପଶ୍ଚିମ ବଙ୍ଗ) ପାର ହୋଇ ବଙ୍ଗାଳଙ୍କୁ ପରାସ୍ତ କରିବା ପରେ ଗଙ୍ଗାରୁ ପାଣି ନେଇ ଫେରିଥିଲେ । ସୋମବଂଶୀ ରାଜାମାନଙ୍କ ଅମଳରେ କୋଶଳ (ସମ୍ବଲପୁର ସୋନପୁର ଅଞ୍ଚଳ) ଓ ଉତ୍କଳ ଯୁକ୍ତରାଜ୍ୟରେ ପରିଣତ ହୋଇଥିଲା ଓ ଏହାର ରାଜଧାନୀ ଯଯାତିନଗର ଥିବାର ଉଲ୍ଲେଖ ଏକାଧିକ ତାମ୍ରଶାସନରେ ରହିଛି । ରାଜେନ୍ଦ୍ରଚୋଳଙ୍କ ଲେଖମାନଙ୍କରେ ଯଯାତିନଗର, ସୋମବଂଶ ଓ ଇନ୍ଦ୍ରରଥ ସ୍ପଷ୍ଟ ଭାବରେ ଲିଖିତ ଥିବାରୁ ଇନ୍ଦ୍ରରଥଙ୍କୁ ଯୁକ୍ତରାଜ୍ୟ କୋଶଳୋତ୍କଳର ଜଣେ ସୋମବଂଶୀ ରାଜା ବୋଲି ଧରିବାକୁ ହେବ । କିନ୍ତୁ ସୋମବଂଶୀ ତାମ୍ରଶାସନମାନଙ୍କରୁ ଯେଉଁ ୦ଟି ରାଜାଙ୍କ ନାମ ମିଳେ, ସେ ମଧ୍ୟରେ ଇନ୍ଦ୍ରରଥଙ୍କ ନାମ ନାହିଁ । ଏହି ବଂଶରେ ଭୀମରଥଙ୍କ ପରେ ଧର୍ମରଥ ଓ ଧର୍ମରଥଙ୍କ ପରେ ନହୁଷ ରାଜା ହୋଇଥିବା କଥା ତାମ୍ରଶାସନମାନଙ୍କରେ ଉଲ୍ଲେଖ ଅଛି । ସ୍ୱକୀୟ ବା ସ୍ୱବଂଶୀୟ ବିଜୟ ଛଡ଼ା ପରାଜୟର କଥା କୌଣସି ଭାରତୀୟ ରାଜାଙ୍କ ପ୍ରାଚୀନ ଲେଖରେ ମିଳେ ନାହିଁ । ତଥାପି ଧର୍ମରଥଙ୍କ ମୃତ୍ୟୁ ପରେ ସୋମବଂଶୀ ରାଜ୍ୟ ଶତ୍ରୁମାନଙ୍କ ଦ୍ୱାରା ଉପଦ୍ରୁତ ହୋଇଥିବା କଥା ବ୍ରହ୍ମେଶ୍ୱର ଶିଳାଲେଖରେ ବର୍ଣ୍ଣିତ ଅଛି । ଅନ୍ୟବଂଶର ରାଜାମାନଙ୍କ ପରି ସୋମବଂଶୀୟ ରାଜାମାନଙ୍କ ମଧ୍ୟ ଏକାଧିକ ନାମ ଥିଲା ।

ଏଣୁ ପଣ୍ଡିତମାନେ ଅନୁମାନ କରନ୍ତି ଯେ ଭୀମରଥ ଓ ଧର୍ମ୍ମରଥଙ୍କ ଠିକ୍ ପରବର୍ତ୍ତୀ ରାଜା ନହୁଷଙ୍କର ଦୋଷରୁ ଏ ଅନ୍ୟତମ ନାମ ଥିଲା ଇନ୍ଦ୍ରରଥ ଓ ତାଙ୍କର ରାଜତ୍ୱରେ ! ରାଜେନ୍ଦ୍ରଚୋଳ ଯଯାତି ନଗର ଆକ୍ରମଣ କରିଥିଲେ । ଏଣୁ ୧୦୨୨ ଖ୍ରୀଷ୍ଟାବ୍ଦ ସୋମବଂଶୀ ରାଜତ୍ୱ କାଳର ଗୋଟିଏ ନିର୍ଦ୍ଦିଷ୍ଟ ତାରିଖ । ଏହି ଅନୁମାନ ମାଦଳାପାଂଜୀ ଦ୍ୱାରା ସମର୍ଥିତ ହେଉଛି କି ନା ତାହା ପରେ ଦେଖାଯିବ । ବର୍ତ୍ତମାନ ପାଇଁ ଧରାଯାଉ ଯେ ୧୦୨୨ ଖ୍ରୀଷ୍ଟାବ୍ଦ ସୋମବଂଶୀ ଶାସନ କାଳର ଗୋଟିଏ ନିର୍ଦ୍ଦିଷ୍ଟ ତାରିଖ ।

୧୦୩୪ ଶକାବ୍ଦ ଅର୍ଥାତ୍ ୧୧୧୨ ଖ୍ରୀଷ୍ଟାବ୍ଦ ବେଳକୁ ଅନନ୍ତ ବର୍ମ୍ମଣ ଚୋଡ଼ଗଙ୍ଗ ସୋମବଂଶ ପରିବର୍ତ୍ତିରେ ଓଡ଼ିଶାରେ ଗଙ୍ଗବଂଶ ସ୍ଥାପନ କରିଥିବାର ନିଶ୍ଚିତ ପ୍ରମାଣ ମିଳେ । ଏଣୁ ୧୦୧୨ ଖ୍ରୀଷ୍ଟାବ୍ଦଟି ସୋମବଂଶୀ ରାଜତ୍ୱର ଅବସାନ ବେଳର ଗୋଟିଏ ନିର୍ଦ୍ଦିଷ୍ଟ ତାରିଖ । ସୋମବଂଶୀ ରାଜାମାନେ ପ୍ରତ୍ୟେକେ କେତେ ବର୍ଷ ଲେଖାଏଁ ରାଜତ୍ୱ କରିଥିଲେ, ତାହା ସ୍ଥିର କରିବା ସମ୍ଭବ ନୁହେଁ । କିନ୍ତୁ ଶିଳା ଓ ତାମ୍ରଲେଖମାନଙ୍କରେ ଜନମେଜୟଙ୍କ ୩୪ ଶ, ପ୍ରଥମ ଯଯାତିଙ୍କ ୨୮ଶ, ଭୀମରଥଙ୍କ ୧୩ଶ, ଦ୍ୱିତୀୟ ଯଯାତିଙ୍କ ୩ୟ ଓ ଉଦ୍ୟୋତକେଶରୀଙ୍କ ୧୮ଶ ବର୍ଷ ରାଜତ୍ୱ କାଳର କଥା ଉଲ୍ଲେଖ ରହିଛି । ଏଣୁ ଏହି ଏହି ରଜାମାନେ ଏହି ଏହି ବର୍ଷରୁ କମ୍ ରାଜତ୍ୱ କରି ନଥିବେ । ନହୁଷ-ଇନ୍ଦ୍ରରଥ ଯଦି ରାଜେନ୍ଦ୍ରଚୋଳଙ୍କ ଦ୍ୱାରା ଆକ୍ରାନ୍ତ ହୋଇ ନିହତ ହୋଇଥାନ୍ତି, ତାହାହେଲେ ତାଙ୍କ ରାଜତ୍ୱକାଳ ମଧ୍ୟ କମିଯାଇ ଥିବ । ଏ ସମସ୍ତ କଥା ମନେରଖି ଓ ରାଜାମାନଙ୍କ ମଧ୍ୟରେ ପିତାପୁତ୍ର ଛଡ଼ା ଅନ୍ୟ ଯେଉଁ ସମ୍ବନ୍ଧ ଥିଲା, ତାହା ମଧ୍ୟ ବିଚାର କରି ୧୦୨୨ ଖ୍ରୀଷ୍ଟାବ୍ଦରୁ ଉପରକୁ ଓ ତଳକୁ

ଗଣନା କଲେ ସୋମବଂଶୀ ରାଜାମାନଙ୍କ ଯେଉଁ ମୋଟାମୋଟି ରାଜତ୍ୱକାଳ ମିଳେ, ତାହା ସେମାନଙ୍କ ବଂଶାବଳୀ ସହିତ ନିମ୍ନରେ ପ୍ରଦତ୍ତ ହେଲା । ଏହି ବଂଶାବଳୀ ସହିତ ମାଦଳାପାଂଜୀର କେଶରୀ ବଂଶର ଯେଉଁ ଯେଉଁ ରାଜାମାନଙ୍କ ନାମ ମେଳ ଖାଇଯାଏ, ତାହା ମଧ୍ୟ ନିମ୍ନରେ ଦିଆଗଲା ।

| ତାମ୍ର ଓ ଶିଳାଲେଖରୁ ପ୍ରାପ୍ତ ସୋମବଂଶ | ମାଦଳାପାଂଜୀରୁ ପ୍ରାପ୍ତ କେଶରୀବଂଶ |
|---|---|
| ଜନମେଜୟ (ଖ୍ରୀ: ୯୧୮-୯୫୦) | ଜନ୍ମେଜୟକେଶରୀ |
| ପ୍ରଥମ ଯଯାତି (ଖ୍ରୀ: ୯୫୦-୯୭୫) | ଯଯାତି କେଶରୀ |
| ଭୀମରଥ (ଖ୍ରୀ: ୯୭୫-୧୦୦୦) | ଭୀମକେଶରୀ |
| ଧର୍ମରଥ (ଖ୍ରୀ: ୧୦୦୦-୧୦୧୫) | ଧର୍ମକେଶରୀ |
| ନହୁଷ, ଇନ୍ଦ୍ରରଥ ? (ଖ୍ରୀ: ୧୦୧୫-୧୦୨୨) | ଇନ୍ଦ୍ରକେଶରୀ |
| ଦ୍ୱିତୀୟ ଯଯାତି (ଖ୍ରୀ: ୧୦୨୨-୨୦୫୦) | —— |
| ଉଦ୍ୟୋତ କେଶରୀ (ଖ୍ରୀ: ୧୦୫୦-୧୦୭୫) | ଅନନ୍ତ କେଶରୀ |

ଏଥିରୁ ଦେଖାଯିବ ଯେ ତାମ୍ର ଓ ଶିଳାଲେଖରୁ ପ୍ରାପ୍ତ ସୋମ-
ବଂଶୀ ରାଜାମାନଙ୍କ ନାମ ଓ ମାଦଳାପାଂଜୀରୁ ପ୍ରାପ୍ତ କେଶରୀବଂଶୀ

ରଜାମାନଙ୍କ ନାମ ମଧ୍ୟରେ ପ୍ରାପ୍ତ ଅପେଲ ନାହିଁ । ଉଦ୍ୟୋତ-କେଶରୀ ଗୋଟିଏ ଅସାଧାରଣ ନାମ ଓ ଏପରି ନାମ ଭାରତର କୌଣସି ରାଜବଂଶରେ ଦେଖାଯାଏ ନାହିଁ । ଜନମୁଖରେ ଏହି ଅସାଧାରଣ ନାମଟି ଗୃହଅସିବା ବେଳେ ତାହା ଅନନ୍ତକେଶରୀରେ ପରିଣତ ହେବା ଅଦୌ ଅସମ୍ଭବ ନୁହେ । ତା ଛଡ଼ା ଏହି ନାମଟି ଗୋଟିଏ ପୋଥିରୁ ଅନ୍ୟ ପୋଥିକୁ କପି କରା ହେବା ବେଳେ ବିକୃତ ହୋଇଥିବା ଅସମ୍ଭବ ନୁହେ । ଉଦ୍ୟୋତ କେଶରୀ ଦ୍ୱିତୀୟ ଯଯାତିଙ୍କ ପୁତ୍ର ଓ ଠିକ୍ ପରବର୍ତ୍ତୀ ରାଜା । ପାଞ୍ଜୀ ମତରେ ମଧ୍ୟ ଅନନ୍ତକେଶରୀ ଯଯାତି କେଶରୀଙ୍କ ପରବର୍ତ୍ତୀ ରାଜା । କିନ୍ତୁ ପାଞ୍ଜୀରେ ପ୍ରଥମ ଯଯାତି ଓ ଦ୍ୱିତୀୟ ଯଯାତିଙ୍କୁ ଏକ ଓ ଅଭିନ୍ନ ରାଜା ବୋଲି ଧରାଯାଇଛି । କିମ୍ବଦନ୍ତୀରେ ଏପରି ଭ୍ରମ ସ୍ୱାଭାବିକ । ପ୍ରଥମ ଯଯାତି ଓ ଦ୍ୱିତୀୟ ଯଯାତିଙ୍କ ଅମଳରେ ଯାହା ଯାହା ଘଟିଥିଲା, ତାହା କେବଳ ଯଯାତି କେଶରୀଙ୍କ ଅମଳରେ ଘଟିଥିଲା ବୋଲି ମାଦଳା-ପାଞ୍ଜୀରେ ବର୍ଣ୍ଣିତ ଅଛି । ଦୁଇଟି ରାଜାଙ୍କ ନାମ ଏକ ଥିବାରୁ ଉଭୟଙ୍କୁ ଭ୍ରମରେ ଏକ ବୋଲି ଧରା ହୋଇଛି ଓ ଉଭୟଙ୍କ ରାଜତ୍ୱକାଳରେ ଘଟିଥିବା ଘଟଣାମାନଙ୍କୁ ମଧ୍ୟ ମିଶାଇ ଦିଆଯାଇଛି । ତାମ୍ର ଓ ଶିଳାଲେଖରେ ସୋମବଂଶର ଯେଉଁ କ୍ରମ ଦେଖା ଯାଏ, ପାଞ୍ଜୀରେ କେଶରୀବଂଶର ଠିକ୍ ସେହି କ୍ରମ ଦେଖାଯାଏ ନାହିଁ । ପାଞ୍ଜୀ ମତରେ ଯଯାତି କେଶରୀ କେଶରୀବଂଶ ସ୍ଥାପନ କରିଥିଲେ, କିନ୍ତୁ ବ୍ରହ୍ମେଶ୍ୱର ଶିଳାଲେଖରୁ ଜଣାଯାଏ ଯେ ଜନମେଜୟ ଉତ୍କଳରେ ସୋମବଂଶ ସ୍ଥାପନ କରିଥିଲେ । ଏହି ବୈଷମ୍ୟର କାରଣ ଏହି ଯେ ଜନମେଜୟ ଉତ୍କଳୀୟ ଲୋକଙ୍କ ସମ୍ପ୍ରଦାୟର ସ୍ମୃତିରେ ଜାଗ୍ରତ ରହିବା ଭଳି କୌଣସି କାମ କରି ନ ଥିଲେ । କିନ୍ତୁ ଯଯାତି ଜଗନ୍ନାଥଙ୍କୁ ପୁନଃ ପ୍ରତିଷ୍ଠାପନ କରି, ତାଙ୍କ ମନ୍ଦିର

ଗ୍ରାମୀଣ କର ଓ ଯାଗଦଣ୍ଡ ଦ୍ୱାର ଉତ୍କଳବାସୀମାନଙ୍କ ମୁକୁଟରେ ଚିର ଜାଗ୍ରତ ହୋଇ ରହିଥିଲେ । ଏଣୁ ପରବର୍ତ୍ତୀ ଜନଶ୍ରୁତି ତାଙ୍କୁହିଁ କେଶରୀବଂଶର ପ୍ରତିଷ୍ଠାତା ବୋଲି ଧରିନେଲା । କିନ୍ତୁ ଦନ୍ତୀବଳ ଅଗ ରାଜା ମଣ୍ଡ ଓ ପଞ୍ଚରାଜା ଆଗ ଏହାଠାର ଓଲଟ ପାଲଟ ହୋଇଯିବା ଅନିବାର୍ଯ୍ୟ ।

ସୋମବଂଶର ଯଯାତିଙ୍କ ନାମ ଓ କେଶରୀ ବଂଶରେ ଯଯାତି କେଶରୀଙ୍କ ନାମ ମିଳିଥିବାରୁ ସ୍ୱର୍ଗୀୟ ଫ୍ଲିଟ୍ ସାହେବଙ୍କ ସମୟ ଠାରୁ ଆଜିପର୍ଯ୍ୟନ୍ତ ଅନେକ ପଣ୍ଡିତ ଉଭୟଙ୍କୁ ଏକ ରାଜବଂଶ ବୋଲି ଧରି ଆସିଥିଲେ, କିନ୍ତୁ ସୋମବଂଶ ସହିତ କେଶରୀ ବଂଶରେ କେତେ ଜଣ ରାଜାଙ୍କ ନାମ ମିଳୁଛି, ଏହା କେହି ଦେଖାଇ ନ ଥିଲେ । ଏହି ଆଲୋଚନାରୁ ଦେଖାଯିବ ଯେ ସୋମବଂଶରେ ଯେଉଁ ଜଣ ରାଜାଙ୍କ ନାମ ଅଛି, କେଶରୀ ବଂଶରେ ମଧ୍ୟ ସେହି ଜଣ ରାଜାଙ୍କ ନାମ ଓଲଟପାଲଟ ଭାବରେ ରହିଛି । ଏଣୁ ଉଭୟ ବଂଶକୁ ଏକ ଓ ଅଭିନ୍ନ ରାଜବଂଶ ବୋଲି ନ ଧରିବାର କୌଣସି ନ୍ୟାୟ ସଙ୍ଗତ କାରଣ ନାହିଁ । ଇନ୍ଦ୍ରରଥ ନାମଟି ନହୁଷଙ୍କ ଅନ୍ୟ ନାମ ଥିଲା ବୋଲି ପଣ୍ଡିତମାନେ ଅନୁମାନ କରିଥିବା କଥା ଆଗରୁ କୁହାଯାଇଛି । ମାଦଳାପାଞ୍ଜୀରୁ ଇନ୍ଦ୍ରକେଶରୀ ନାମଟି ମିଳୁଥିବାରୁ ସେମାନଙ୍କ ଏହି ଅନୁମାନ ଅନ୍ୟ ଉପାଦାନ ଦ୍ୱାରା ସମର୍ଥିତ ହେଉଛି । ଏଣୁ ଉଲ୍ଲିଖିତ ସୋମବଂଶ ରାଜାଙ୍କ କାଳରେ କେତେକ ବର୍ଷ କମ୍ ବେଶୀ ହେବାର ଯଥେଷ୍ଟ ସମ୍ଭାବନା ଥିଲେ ମଧ୍ୟ ତାର ମୋଟାମୋଟି ସତ୍ୟ ସମ୍ବନ୍ଧରେ ସନ୍ଦେହ କରିବାର କୌଣସି ନ୍ୟାୟସଙ୍ଗତ କାରଣ ନାହିଁ ।

ସୋମବଂଶୀ-କେଶରୀରାଜାମାନଙ୍କ ଯେଉଁ ସମୟ ନିର୍ଦ୍ଧାରଣ କରାଗଲା, ତାହା ସେମାନଙ୍କ ତାମ୍ର ଓ ଶିଳାଲେଖର ଲିପିର ବୟସ ସହିତ ପ୍ରାୟ ମେଳ ଖାଉଛି । ଆଗରୁ କୁହାଯାଇଛି ଯେ ଫ୍ଲିଟ୍ ଓ କିଲ୍‌ହର୍ଣ୍ଣ ଲିପିତତ୍ତ୍ୱ ଅନୁସାରେ ସୋମବଂଶୀ ରାଜାମାନଙ୍କୁ ୧୧ଶ ଓ ୧୨ଶ ଶତାବ୍ଦୀରେ ସ୍ଥାନ ଦେଇଛନ୍ତି । ଉଲ୍ଲିଖିତ ଆଲୋଚନାରୁ ଦେଖାଯିବ ଯେ ସୋମବଂଶୀମାନେ ୧୦ମ ଓ ୧୧ଶ ଶତାବ୍ଦୀରେ ରାଜତ୍ୱ କରୁଥିଲେ । ଲିପିତତ୍ତ୍ୱ ଅନୁସାରେ ନିର୍ଦ୍ଧାରିତ ସମୟରେ ଏକଶତ ବର୍ଷ ଏପଟ ସେପଟ ହୋଇପାରେ ବୋଲି ମଧ୍ୟ ଆଗରୁ କୁହାଯାଇଛି । କିନ୍ତୁ ମାଦଳାପାଂଜୀରେ ଯେ କେଶରୀବଂଶର ରାଜତ୍ୱକୁ ୫ମ ଶତାବ୍ଦୀରେ ଆରମ୍ଭ କରାଯାଇଛି, ତାହା ଏକ ପ୍ରକାର ଅସମ୍ଭବ କଥା । ମାଦଳାପାଂଜୀରେ ଏପରି ଭ୍ରମ କିପରି ପ୍ରବେଶ କରିଛି, ତାର ସମ୍ୟକ୍ ଆଲୋଚନା ପରେ କରାଯିବ ।

ଏହି ଆଲୋଚନାରୁ ଆଉ କେତେଗୁଡ଼ିଏ ପ୍ରଶ୍ନ ସ୍ୱତଃ ମନରେ ଜାଗ୍ରତ ହୁଏ । ପ୍ରଥମ ପ୍ରଶ୍ନ ଏହି ଯେ ମାଦଳା ପାଂଜୀରେ ସୋମବଂଶକୁ କେଶରୀବଂଶ ବୋଲି କାହିଁକି କୁହାଯାଇଛି ? ଏହାର ଉତ୍ତର ଏହି ଯେ ଗଜପତି ପରି କେଶରୀ ଗୋଟିଏ ଜନପ୍ରିୟ ଉପାଧି । ଗଜପତି ଉପାଧିଟି ଶିଳା ଓ ତାମ୍ରଲେଖରେ କ୍ୱଚିତ୍ ଦେଖାଯାଏ, କିନ୍ତୁ ଗଙ୍ଗବଂଶରୁ ଭୋଇବଂଶ ପର୍ଯ୍ୟନ୍ତ ଓଡ଼ିଶାର ସମସ୍ତ ରାଜାଙ୍କୁ ଓଡ଼ିଶାବାସୀ ଓ ଭାରତବାସୀମାନେ ଗଜପତି ବୋଲି କହୁଥିଲେ । ଗଙ୍ଗବଂଶର ପୂର୍ବବର୍ତ୍ତୀ ରାଜାମାନଙ୍କୁ ଯେ ଓଡ଼ିଶା ଓ ଓଡ଼ିଶା ବାହାରର ଲୋକେ କେଶରୀ ବୋଲି କହୁଥିଲେ, ତାର ଅନେକ ପ୍ରମାଣ ଅଛି । ଓଡ଼ିଶାର ଯେଉଁ ରାଜା ଚୀନ୍ ସମ୍ରାଟଙ୍କୁ ବୌଦ୍ଧ ଗ୍ରନ୍ଥ ଗଣ୍ଡବ୍ୟୂହ ପଠାଇ ଥିଲେ, ତାଙ୍କ ନାମଥିଲା ଶୁଭଙ୍କର

କେଶରୀ । ଅଥଚ ଭୌମତାମ୍ରଶାସନମାନଙ୍କରେ ଶୁଭକର ରାଜାଙ୍କ ଏହି ନାମ ଥିଲେ ମଧ୍ୟ, ତାହା ଶୁଭକର କେଶରୀ ବୋଲି ଲେଖା ନ ହୋଇ ଶୁଭଙ୍କର ଦେବ ବୋଲିହିଁ ଲେଖା ହୋଇଛି । ବୌଦ୍ଧ ଗ୍ରନ୍ଥ ମଂଜୁଶ୍ରୀ ମୂଳକଳ୍ପରେ ବର୍ଣ୍ଣିତଅଛି ଯେ ପ୍ରକଟାଦିତ୍ୟ ପଞ୍ଚକେଶରୀଙ୍କୁ ପରାସ୍ତ କରିଥିଲେ । ଏହି ରାଜାଙ୍କୁ ଓଡ଼ିଶାର ରାଜା ବୋଲି ପଣ୍ଡିତମାନେ ଧରନ୍ତି । ସନ୍ଧ୍ୟାକର ନନ୍ଦୀଙ୍କ ରାମଚରିତରେ ବର୍ଣ୍ଣିତ ଅଛି ଯେ ବଙ୍ଗରାଜା ରାମପାଳ ଦେବଙ୍କ ସେନାପତି ଜୟସିଂହ ଓଡ଼ିଶା ରାଜା କର୍ଣ୍ଣକେଶରୀଙ୍କୁ ସାହାଯ୍ୟ କରିଥିଲେ । ଏହି ସବୁ ପ୍ରମାଣରୁ ଜଣାଯାଏ ଯେ ଗଙ୍ଗବଂଶ ପୂର୍ବରୁ ଓଡ଼ିଶା ରାଜାମାନଙ୍କର ଡାକ ନାମ ଥିଲା କେଶରୀ । ଏହି ଡାକନାମ ଜନଶ୍ରୁତିରେ ଜୀବିତ ରହିଥିଲା; ଏଣୁ ମାଦଳାପାଂଜୀରେ ସୋମବଂଶୀ ରାଜାମାନଙ୍କୁ କେଶରୀବଂଶୀ ବୋଲି ଆଖ୍ୟାତ କରାଗଲା । ସୋମବଂଶୀ ରାଜାମାନେ ମହାଭବଗୁପ୍ତ ଓ ମହାଶିବଗୁପ୍ତ ଏହି ଦୁଇଟି ଉପାଧି ଜଣକପରେ ଜଣେ ବ୍ୟବହାର କରିଥିବାର ତାମ୍ରଶାସନମାନଙ୍କରେ ଦେଖାଯାଏ । ଏଣୁ ଓଡ଼ିଶାର କୌଣସି କିମ୍ବଦନ୍ତୀରେ ଏମାନଙ୍କୁ ଗୁପ୍ତବଂଶୀ ରାଜା ବୋଲି ମଧ୍ୟ ବର୍ଣ୍ଣନା କରାଯାଇଛି ।

ଏ ସମ୍ବନ୍ଧରେ ଆଉ ଗୋଟିଏ ପ୍ରଶ୍ନ ପାଠକ ମନରେ ଜାଗ୍ରତ ହୁଏ । ସୋମବଂଶୀ ତାମ୍ରଶାସନମାନଙ୍କରୁ ଏହି ବଂଶୀୟ ରାଜାମାନଙ୍କ ମୋଟେ ୭ଟି ନାମ ମିଳେ । ତାମ୍ରଶାସନର ସୋମବଂଶୀ ଓ ମାଦଳାପାଂଜୀର କେଶରୀ ବଂଶ ଯଦି ଏକ ଓ ଅଭିନ୍ନ ରାଜବଂଶ, ତାହାହେଲେ ମାଦଳାପାଂଜୀର ବଉଳ ପୋଥିରୁ ପ୍ରାପ୍ତ କେଶରୀରାଜାମାନଙ୍କ ସଂଖ୍ୟା ୭୫ ପର୍ଯ୍ୟନ୍ତ ହେଲା କିପରି ? ଏହି ପ୍ରଶ୍ନର

ଉତ୍ତର ପାଇଁ କେତେଗୁଡ଼ିଏ ବିଷୟ ବିଚାର କରିବାକୁ ହେବ । ପରେ ଆଲୋଚନା କରି ଦେଖାଇ ଦଆଯିବ ଯେ ମାଦଳାପାଂଜୀର କେଶରୀ ରାଜାମାନଙ୍କ ସଂଖ୍ୟା ଭ୍ରମତଃ ବଢ଼ି ଯାଇଛି; ୧୮୨୨ ଖ୍ରୀଷ୍ଟାବ୍ଦରେ ଷ୍ଟାର୍ଲିଂ ସାହେବ ଯେଉଁ ମାଦଳାପାଂଜୀ ସାହାଯ୍ୟରେ ତାଙ୍କ ପୁସ୍ତକରେ କେଶରୀରାଜାମାନଙ୍କ ଇତିହାସ ଲେଖିଥିଲେ, ସେଥିରେ କେଶରୀରାଜାମାନଙ୍କ ସଂଖ୍ୟା ଥିଲା ୩୮ । ତଥାପି ଏହି ସଂଖ୍ୟା ମଧ୍ୟ ତାମ୍ର ଲେଖର ସୋମବଂଶୀରାଜାମାନଙ୍କ ସଂଖ୍ୟା ତୁଳନାରେ ଖୁବ୍ ବେଶୀ । ଏହା କିପରି ସମ୍ଭବ ହୋଇଥିବ, ତାହାହିଁ ଏଠାରେ ବିଚାର କରାଯାଉ ।

ଜଦେଶୀତକେଶରୀଙ୍କ ରାଜତ୍ୱର ଶେଷ ଠାରୁ ଗଙ୍ଗବଂଶର ସ୍ଥାପୟିତା ଚୋଡ଼ଗଙ୍ଗ ଦେବଙ୍କ ରାଜତ୍ୱର ଆରମ୍ଭ ପର୍ଯ୍ୟନ୍ତ ଯେଉଁ ପ୍ରାୟ ୪୫ ବର୍ଷ ରହିଲା, ସେଥି ମଧ୍ୟରେ ଯେଉଁ ସୋମବଂଶୀ ରାଜାମାନେ ଓଡ଼ିଶାରେ ରାଜତ୍ୱ କରିଥିବେ, ସେମାନଙ୍କ ନାମ ତାମ୍ର ବା ଶିଳାଲେଖରୁ ମିଳି ନାହିଁ । ଏହି ରାଜାମାନଙ୍କ ନାମ ମାଦଳାପାଂଜୀର କେଶରୀବଂଶ ତାଲିକାରେ ଥାଇପାରେ । ଜଣେ ରାଜାଙ୍କ ଏକାଧିକ ନାମ ଥାଏ । ଆଗରୁ କୁହାଯାଇଛି ଯେ ଚୋଡ଼-ଗଙ୍ଗଙ୍କର ଅନ୍ତତଃ ଗୋଟିଏ ଭିନ୍ନ ନାମ ଥିଲା ଏବଂ ସେଥି ମଧ୍ୟରୁ ଗଙ୍ଗେଶ୍ୱର ନାମଟିକୁ ଅନ୍ୟ ଏକ ରାଜାର ନାମ ବୋଲି ମାଦଳା-ପାଂଜୀରେ ବର୍ଣ୍ଣନା କରାଯାଇଛି । ସୋମବଂଶୀ ରାଜାମାନଙ୍କ ଭିନ୍ନ ନାମ ମାନ ମଧ୍ୟ କେଶରୀବଂଶ ତାଲିକାରେ ପଶି ରାଜାସଂଖ୍ୟା ବୃଦ୍ଧି କରିପାରିଥାଏ । ବିସ୍ମୃତି, ଭ୍ରାନ୍ତି ଓ ମୌଳିକତାରୁ ଅନେକ ଅଳୀକ ନାମ ସୃଷ୍ଟି ହୋଇଥାଏ । ଏହି ଅଳୀକନାମମାନଙ୍କୁ ତିନି ଭାଗରେ ବିଭକ୍ତ କରାଯାଇପାରେ । (କ) ପୌରାଣିକ

ମତରେ ଧଉଳି ପାହାଡ଼ର ଅଶୋକଙ୍କ ଶିଳାଲେଖ ସନ୍ନିକଟ ଯେଉଁ ହସ୍ତୀମୂର୍ତ୍ତି ଅଛି, ତାହା ହେଉଛି ମହାଭାରତର ଅଶ୍ୱତ୍‌ଥାମା ହସ୍ତୀ; ଶିଶୁପାଳଗଡ଼କୁ ମହାଭାରତର ଶିଶୁପାଳ ତିଆରିଥିଲେ; ଭୁବନେଶ୍ୱରର ଭାସ୍କରେଶ୍ୱର ମନ୍ଦିର ପାଖରେ ଥିବା ପଞ୍ଚପାଣ୍ଡବ ଗୁମ୍ଫାମାନଙ୍କୁ ପଞ୍ଚପାଣ୍ଡବ ତିଆରି କରିଥିଲେ; ନୀଳଗିରିରେ ମହାଭାରତର ଶମିବୃକ୍ଷ ଅଛି; ମୟୂରଭଞ୍ଜର ଖିଚିଙ୍ଗରେ କୀଚକଗଡ଼ ଓ ବିରାଟ ଗଡ଼ ଅଛି ଇତ୍ୟାଦି । (ଖ) ନୈଷ୍ଠିକ ମତରେ ବ୍ରହ୍ମେଶ୍ୱର ମନ୍ଦିରକୁ ବ୍ରହ୍ମା ତିଆରିଥିଲେ; ମେଘେଶ୍ୱରକୁ ମେଘ ତିଆରିଥିଲେ; ଯମେଶ୍ୱରକୁ ଯମ ତିଆରି ଥିଲେ ଇତ୍ୟାଦି (ଏକାମ୍ର ପୁରାଣ ଦ୍ରଷ୍ଟବ୍ୟ) । (ଗ) ଭ୍ରାନ୍ତ ଐତିହାସିକ ମତରେ ଶିଶୁପାଳ ଗଡ଼କୁ ଶିଶୁପାଳ କେଶରୀ ତିଆରିଥିଲେ; ଶାରଙ୍ଗ ଗଡ଼କୁ ଶାରଙ୍ଗ କେଶରୀ ତିଆରିଥିଲେ; ଚଣ୍ଡେଶ୍ୱର ମନ୍ଦିରକୁ ଚନ୍ଦ୍ର କେଶରୀ ତିଆରି ଥିଲେ ଇତ୍ୟାଦି । ଏହି (ଗ) ଶ୍ରେଣୀୟ ନାମମାନ ମଧ୍ୟ ମାଦଳାପାଞ୍ଜିର କେଶରୀବଂଶ ତାଲିକାରେ ରହିଛି । ସୋମବଂଶୀ ରାଜତ୍ୱରେ ସେମାନଙ୍କ ଯେଉଁ ସାମନ୍ତ ରଜାମାନେ କୌଣସି କୀର୍ତ୍ତି କରି ଜନ-ଶ୍ରୁତିରେ ଜୀବିତ ରହିଥିଲେ, ସେମାନଙ୍କ ନାମ ମଧ୍ୟ କେଶରୀବଂଶ ତାଲିକାରେ ପଶିଥିବା ଖୁବ୍ ସମ୍ଭବ । ଏହି ସବୁ କାରଣରୁ କେଶରୀ ରଜାମାନଙ୍କ ସଂଖ୍ୟା ବଢ଼ି ଯାଇଛି । ନଚେତ୍ ଗୋଟିଏ ରାଜବଂଶରେ ୭୫ ଜଣ ପର୍ଯ୍ୟନ୍ତ ରଜା କ୍ରମାନୁସାରେ ରାଜତ୍ୱ କରିଥିବା ଘଟନା ପୃଥିବୀ-ଇତିହାସରେ ବିରଳ । ପରବର୍ତ୍ତୀ ଆଲୋଚନାରେ ଏହି ବିଷୟ ଅଧିକ ସ୍ପଷ୍ଟ ହେବ ।



# ମାଦଳା ପାଞ୍ଜୀର ଶକାବ୍ଦ

ମାଦଳାପାଞ୍ଜୀର ସମସ୍ତ ପୋଥିରେ ଶକାବ୍ଦର ବ୍ୟବହାର ଦେଖାଯାଏ ନାହିଁ । ଷ୍ଟାର୍ଲିଂ ଓ ହଣ୍ଟର୍, ମାଦଳାପଞ୍ଜୀର ଯେଉଁ ପୋଥିମାନ ବ୍ୟବହାର କରିଥିଲେ, ସେଥିରେ ଶକାବ୍ଦ ବ୍ୟବହୃତ ହୋଇଥିଲା । ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଯେଉଁ ଛଅଗୋଟି ପୋଥି ସାହାଯ୍ୟରେ ତାଙ୍କ ମାଦଳାପାଞ୍ଜି ପୁସ୍ତକ ପ୍ରକାଶ କରିଛନ୍ତି, ସେଥି ମଧ୍ୟରୁ ଗୋଟିକରେ ଶକାବ୍ଦ ବ୍ୟବହାର ଦେଖାଯାଏ । ଓଡ଼ିଶା ଇତିହାସର ଅତି ପୁରାତନ ଘଟନାବଳୀ ସହିତ ଶକାବ୍ଦ ବ୍ୟବହାର କରି ମାଦଳା ପାଞ୍ଜୀର ରଚୟିତାମାନେ ଗୋଟିଏ ସମସ୍ୟା ସୃଷ୍ଟି କରିଛନ୍ତି; କାରଣ ଏକାଦଶ-ଦ୍ୱାଦଶ ଶତାବ୍ଦୀ ପୂର୍ବରୁ ଓଡ଼ିଶାର କୌଣସି ପ୍ରାଚୀନ ଲେଖରେ ଶକାବ୍ଦର ବ୍ୟବହାର ଦେଖାଯାଏ ନାହିଁ । ଏଣୁ ଏଠାରେ ଓଡ଼ିଶାରେ ଶକାବ୍ଦ ବ୍ୟବହାରର ଇତିହାସ ସମ୍ବନ୍ଧରେ ସାମାନ୍ୟ ଆଲୋଚନା କଲେ ଅପ୍ରାସଙ୍ଗିକ ହେବ ନାହିଁ ।

ଚୋଡ଼ଗଙ୍ଗ ଦେବ ୧୧୧୨ ଖ୍ରୀଷ୍ଟାବ୍ଦରେ ଓଡ଼ିଶାରେ ଗଙ୍ଗବଂଶ ସ୍ଥାପନ କଲେ । ଏହା ପୂର୍ବରୁ ସମଗ୍ର ଓଡ଼ିଶାରେ ବା ତାର ଅଞ୍ଚଳ ବିଶେଷରେ ଯେଉଁ ରାଜବଂଶମାନେ ରାଜତ୍ୱ କରୁଥିଲେ, ସେମାନଙ୍କ ବହୁ ତାମ୍ର ଓ ଶିଳାଲେଖ ଆବିଷ୍କୃତ ଓ ପ୍ରକାଶିତ ହୋଇଛି; କିନ୍ତୁ ଏହି ଲେଖମାନଙ୍କ ମଧ୍ୟରୁ କୌଣସିଟିରେ ଶକା

ଶକାବ୍ଦ ବ୍ୟବହୃତ ହୋଇନାହିଁ । * ତାମ୍ରଲେଖମାନଙ୍କରୁ ମିଳଥିବା ଓଡ଼ିଶାର ସର୍ବପ୍ରାଚୀନ ବିଗ୍ରହ ବଂଶୀୟ ରାଜାମାନେ ସେମାନଙ୍କ ଲେଖମାନଙ୍କରେ ଗୁପ୍ତାବ୍ଦ ବ୍ୟବହାର କରିଛନ୍ତି । ଏମାନଙ୍କ ପରବର୍ତ୍ତୀ ଶୈଳୋଦ୍ଭବ ବଂଶରୁ ଜଣେ ରାଜା ତାଙ୍କ ତାମ୍ର ଶାସନରେ ଗୁପ୍ତାବ୍ଦ ବ୍ୟବହାର କରିଛନ୍ତି । କଳିଙ୍ଗ ଓ ଦକ୍ଷିଣ ଓଡ଼ିଶାରେ ସମସ୍ତ ପ୍ରାଚୀନ ଗଙ୍ଗରାଜା ସେମାନଙ୍କ ଲେଖମାନଙ୍କରେ ଗଙ୍ଗାବ୍ଦ ବ୍ୟବହାର କରିଛନ୍ତି । ଭୌମକରରାଜାମାନେ ସେମାନଙ୍କ ଲେଖମାନଙ୍କରେ ଯେଉଁ ଅବ୍ଦ ବ୍ୟବହାର କରିଛନ୍ତି, ତାର ନାମ ଦିଆ ହୋଇନାହିଁ । ଏଣୁ ଏହି ଅବ୍ଦକୁ ଭୌମାବ୍ଦ ବୋଲି ଧରାଯାଇଛି । ସୋମବଂଶୀ କେଶରୀ ରାଜାମାନେ ସେମାନଙ୍କ ତାମ୍ର ଓ ଶିଳାଲେଖମାନଙ୍କରେ କୌଣସି ଅବ୍ଦ ବ୍ୟବହାର ନ କରି ସେମାନଙ୍କ ଶାସନକାଳର ଅଙ୍କ ବା ବର୍ଷମାନ ଦେଇଛନ୍ତି । ଓଡ଼ିଶାର ସାର୍ବଭୌମ ରାଜବଂଶ ଛଡ଼ା ଅନ୍ୟାନ୍ୟ ରାଜବଂଶମାନଙ୍କ ମଧ୍ୟରେ ଭଞ୍ଜ ଓ ନନ୍ଦମାନେ ସେମାନଙ୍କ ଲେଖମାନଙ୍କରେ ଯେଉଁ ଅବ୍ଦ ବ୍ୟବହାର କରିଛନ୍ତି, ତାର ନାମ ଦିଆ ହୋଇନାହିଁ । ଏଣୁ ତାକୁ ଭୌମାବ୍ଦ ବୋଲି ଧରାଯାଇଛି । ଭୌମ, ଭଞ୍ଜ ଓ ନନ୍ଦମାନଙ୍କ ଲେଖମାନଙ୍କରେ ଯେଉଁ ଅବ୍ଦ ବ୍ୟବହୃତ ହୋଇଛି, ତାହା

---

* ବିକ୍ରମାବ୍ଦ ଖ୍ରୀଷ୍ଟପୂର୍ବ ୫୭ ରୁ, ଶକାବ୍ଦ ୭୮ ଖ୍ରୀଷ୍ଟାବ୍ଦରୁ, ଗୁପ୍ତାବ୍ଦ ୩୧୯ ଖ୍ରୀଷ୍ଟାବ୍ଦରୁ, ଗଙ୍ଗାବ୍ଦ ୦୯୬ (?) ଖ୍ରୀଷ୍ଟାବ୍ଦରୁ, ହର୍ଷାବ୍ଦ ୬୦୬ ଖ୍ରୀଷ୍ଟାବ୍ଦରୁ, ଭୌମାବ୍ଦ ୭୩୬ ଖ୍ରୀଷ୍ଟାବ୍ଦରୁ ଓ କପିଳାବ୍ଦ ୧୦୩୬ ଖ୍ରୀଷ୍ଟାବ୍ଦରୁ ଆରମ୍ଭ ହୋଇଥିଲା ।

ଯେ ଶକାବ୍ଦ ନୁହେଁ, ଏ ବିଷୟରେ ମତଦ୍ୱୈଧ ନାହିଁ । ଏହି ଅନାମ ଅବ୍ଦକୁ ଶକାବ୍ଦ ବୋଲି ଧରାଗଲେ, ଭୌମମାନେ ଖ୍ରୀଷ୍ଟୀୟ ୨ୟ ଶତାବ୍ଦୀର ପ୍ରାରମ୍ଭରୁ ରାଜତ୍ୱ କରିଥିଲେ ବୋଲି ମାନିବାକୁ ପଡ଼ିବ । ଭୌମରାଜା ପ୍ରଥମ ଶୁଭାକରଦେବଙ୍କ ତାମ୍ର ଶାସନରେ ଏହି ଅନାମ ଅବ୍ଦର ୫୪ ଅଙ୍କ ଅଛି ଓ ତାକୁ ଶକାବ୍ଦ ବୋଲି ଧରାଗଲେ ତାହା ୧୩୨ ଖ୍ରୀଷ୍ଟାବ୍ଦରେ ପରିଣତ ହେଉଛି । କିନ୍ତୁ ପ୍ରତ୍ନତତ୍ତ୍ୱବିଜ୍ଞାନକୁ ଏକାବେଳେକେ ଅସ୍ୱୀକାର ନକରି ଓ ଭାରତର ଇତିହାସକୁ ଏକାବେଳେକେ ନବଦଳାଇ ଭୌମମାନଙ୍କୁ ଖ୍ରୀଷ୍ଟାବ୍ଦ ୨ୟ ଶତାବ୍ଦୀରେ ସ୍ଥାନ ଦିଆଯାଇ ପାରିବ ନାହିଁ । ଭୌମତାମ୍ରଶାସନମାନଙ୍କରେ ଯେଉଁ ଅକ୍ଷର ବ୍ୟବହୃତ ହୋଇଛି, ସେ ଗୁଡ଼ିକର ବୟସ ସପ୍ତମ-ଅଷ୍ଟମ ଶତାବ୍ଦୀରୁ କମ୍ ନୁହେ ଓ ଭୌମମାନଙ୍କ ସମସାମୟିକ ଭାରତୀୟ ଓ ବୈଦେଶିକ ରାଜାମାନେ ମଧ୍ୟ ଏହି ସମୟ ମଧ୍ୟରେ ଜୀବିତ ଥିଲେ । ଏଣୁ ଏହି ଅନାମ ଅବ୍ଦକୁ ଶକାବ୍ଦ ବୋଲି ଧରିବାକୁ କୌଣସି ଐତିହାସିକ ପ୍ରମାଣ ବା ପ୍ରଗଳ୍ଭତା କରି ନାହାନ୍ତି ।

ଏଣୁ ନିଶ୍ଚିତ ଭାବରେ ଜଣାଯାଏ ଯେ ଓଡ଼ିଶାରେ ଗଙ୍ଗ ରାଜତ୍ୱର ଆରମ୍ଭ ପର୍ଯ୍ୟନ୍ତ ଶକାବ୍ଦ ବ୍ୟବହୃତ ହେଉନଥିଲା । ଖାଲି ସେତିକି ନୁହେ, ଏହି ସମୟ ପୂର୍ବରୁ କୋଶଳ, ବଙ୍ଗ ଓ ମଗଧରେ ମଧ୍ୟ ଶକାବ୍ଦ ବ୍ୟବହୃତ ହେଉ ନଥିଲା । ଓଡ଼ିଶାର ଭୌମ ଓ ସୋମବଂଶୀ କେଶରୀମାନଙ୍କ ସମସାମୟିକ ବଙ୍ଗ ଓ ବିହାରର ପାଳରାଜାମାନେ ସେମାନଙ୍କ ଲେଖମାନଙ୍କରେ ଶକାବ୍ଦ ବ୍ୟବହାର କରି ନାହାନ୍ତି । ଶକାବ୍ଦ ଦକ୍ଷିଣ ଭାରତରେ ପ୍ରଥମେ

କିପରି ବ୍ୟବହୃତ ହେଲା, ତାର ଇତିହାସ ରହସ୍ୟ । ଯେତେଦୂର
ଜଣାଯାଏ ଗଙ୍ଗରାଜାମାନେ ଚୈଳମାନଙ୍କ ଠାରୁ ଶକାବ୍ଦର
ବ୍ୟବହାର ଶିଖିଥିଲେ । ଶକାବ୍ଦ କୌଣସି ବଂଶ ବିଶେଷ
ମଧ୍ୟରେ ଆବଦ୍ଧ ନ ହୋଇ ଭାରତର ବହୁ ଅଞ୍ଚଳରେ ବ୍ୟବହୃତ
ହେଉଥିଲା । ଏଣୁ ଗୈଙ୍ଗତଙ୍କ ଗଙ୍ଗାବ୍ଦ ପରିତ୍ୟାଗ କରି ଶକାବ୍ଦ
ବ୍ୟବାହାର କରିବା ଅଧିକ ସୁବିଧା ଜନକ ମନେ କରିଥିଲେ ।
ଗୈଙ୍ଗଙ୍କ ସବମତ ୧୫ ଗଙ୍ଗରାଜା ଓଡ଼ିଶାରେ ରାଜତ୍ୱ
କରିଥିଲେ, କିନ୍ତୁ ଏମାନଙ୍କ ମଧ୍ୟରୁ ଯେଉଁମାନଙ୍କ ଲେଖମାନ ଆଜି
ପର୍ଯ୍ୟନ୍ତ ମିଳିଛି ଓ ପ୍ରକାଶିତ ହୋଇଛି ସେ ସବୁରେ ଶକାବ୍ଦ
ବ୍ୟବହୃତ ହୋଇଥିବାରହିଁ ଦେଖାଯାଏ । ଏଣୁ ଏହା ନିଃ-
ସନ୍ଦେହରେ କୁହାଯାଇପାରେ ଯେ ଗଙ୍ଗବଂଶ ସ୍ଥାପିତ ହେବା ସଙ୍ଗେ
ସଙ୍ଗେହିଁ ସର୍ବ ପ୍ରଥମେ ଓଡ଼ିଶାରେ ଶକାବ୍ଦ ବ୍ୟବହୃତ
ହୋଇଥିଲା ।

ତେବେ, ମାଦଳାପାଞ୍ଜୀର ରଚୟିତା ଗଙ୍ଗବଂଶ ପୂର୍ବର ଅତି
ପ୍ରାଚୀନ ରାଜବଂଶମାନଙ୍କ ସହିତ ଶକାବ୍ଦ ବ୍ୟବହାର କଲେ
କିପରି ? ପାଞ୍ଜିକାର ଲିଖିତ ବା ପ୍ରଚଳିତ କିମ୍ବଦନ୍ତୀରୁ ଓଡ଼ିଶାର
କେଶରୀରାଜାମାନଙ୍କ ବଂଶାବଳୀ ପାଇବା ସଙ୍ଗେ ସଙ୍ଗେ ଏହି
ବଂଶର ରାଜାମାନେ ଯେତେବର୍ଷ ଲେଖାଏଁ ରାଜତ୍ୱ କରିଥିଲେ,
କେବଳ ସେହି ବର୍ଷ ଗୁଡ଼ିକହିଁ ପାଇଥିବେ । କିନ୍ତୁ ସେମାନେ
କେତେ ଶକାବ୍ଦରୁ କେତେ ଶକାବ୍ଦ ପର୍ଯ୍ୟନ୍ତ ରାଜତ୍ୱ
କରିଥିଲେ, ଏକଥା କଦାପି ପାଇ ପାରିଥିବେ । ହିନ୍ଦୁ ଐତିହାସିକ-
ମାନେ ପୌରାଣିକ ରୀତିରେହିଁ ଇତିହାସ ପ୍ରକାଶ କରିପାଇଛନ୍ତି ।
ସେମାନେ ସତ୍ୟଯୁଗରୁ ଆରମ୍ଭ କରି କଳିଯୁଗ ପର୍ଯ୍ୟନ୍ତ ଯେତେ

ହୋଇଥିଲେ, ସେମାନଙ୍କ ରାଜ୍ୟଭୋଗର ବର୍ଷମାନ ଦିଆଯାଇଛନ୍ତି; କିନ୍ତୁ କେଉଁ ରାଜା କେତେ ଖ୍ରୀଷ୍ଟାବ୍ଦରୁ ବା କେତେ ଶକାବ୍ଦରୁ କେତେ ଖ୍ରୀଷ୍ଟାବ୍ଦ ବା କେତେ ଶକାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ, ଏ କଥା କୁତ୍ରାପି କହି ନାହାନ୍ତି । ସଂସ୍କୃତ ସାହିତ୍ୟରେ ଯେତେ ପୁରାଣ ଅଛି, ସେ ଗୁଡ଼ିକରେ ଅନେକ ବହୁତ ପ୍ରାଚୀନ ରାଜବଂଶାବଳୀମାନ ରହିଛି । କିନ୍ତୁ କେବଳ ଶାସନକାଳ ଛଡ଼ା ରାଜାମାନେ କେତେ ଅବ୍ଦରୁ କେତେ ଅବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ, ଏ କଥା କୌଣସିଠାରେ ନାହିଁ । ମାଦଳାପାଞ୍ଜୀ ଠିକ୍ ପୌରାଣିକ ଧାଞ୍ଚରେ ଲେଖା ହୋଇଛି । ପାଞ୍ଜୀରେ ଥିବା ରାଜଭୋଗର ବର୍ଷମାନ ଆଲୋଚନା କଲେ ଜଣାଯାଏ ଯେ ଯେଉଁ ରାଜା ଯେତେ ବେଶୀ ପ୍ରାଚୀନ, ସେ ସେତେ ବେଶୀ କାଳ ରାଜତ୍ୱ କରିଥିଲେ । ଉଦାହରଣ ସ୍ୱରୂପ, ପାଞ୍ଜୀମତରେ ସତ୍ୟଯୁଗର ବଳୀରାଜା ୫ ଲକ୍ଷ ବର୍ଷ, ତ୍ରେତାଯୁଗର ଦିଲୀପ୍ ରାଜା ୨୮ ହଜାର ବର୍ଷ, ଦ୍ୱାପରଯୁଗର ବେଣୁରାଜା ୫୨ ହଜାର ବର୍ଷ, କଳିଯୁଗର ଜନମେଜୟ ରାଜା (ପରୀକ୍ଷିତଙ୍କ ପୁତ୍ର) ୮୮୨ ବର୍ଷ ଓ କଳିଯୁଗର ଯଯାତିକେଶରୀ ୫୭ ବର୍ଷ ରାଜତ୍ୱ କରିଥିଲେ (ମାଦଳାପାଞ୍ଜୀ, ପୃ ୧—୬) । ପାଞ୍ଜୀକାର କିମ୍ବଦନ୍ତୀରୁ ଏହି ବର୍ଷଗୁଡ଼ିକ ମାନ ପାଇଥିବେ; ତେବେ ସେ କଳିଯୁଗର ରାଜାମାନଙ୍କ ସହିତ ଶକାବ୍ଦ ବ୍ୟବହାର କଲେ କିପରି ? ଅବଶ୍ୟ ଯଦି ସେ କୌଣସି ରାଜାଙ୍କର ରାଜତ୍ୱରେ ଘଟିଥିବା ଘଟନା ସହିତ କୌଣସି ନିର୍ଦ୍ଦିଷ୍ଟ ଶକାବ୍ଦ ପାଇଥାନ୍ତି, ତାହାହେଲେ ସେହି ବଂଶୀୟ ରାଜାମାନଙ୍କର ରାଜତ୍ୱକାଳମାନଙ୍କ ଶକାବ୍ଦରେ ପରିଣତ କରିବା ତାଙ୍କ ପକ୍ଷରେ ଆଦୌ ଅସମୀଚୀନ ବା କଷ୍ଟକର ହୋଇ ନ ଥିବ । ଯଦି ସେ ଜାଣିପାରିଥାନ୍ତି ଯେ ଲଲାଟେନ୍ଦୁକେଶରୀଙ୍କ ୨୭ ଅଙ୍କରେ ଭୁବନେଶ୍ୱର ମନ୍ଦିର ଶେଷ ହେବା ବେଳକୁ

୫୮୮ ଶକାବ୍ଦ ହୋଇଥିଲା, ତାହା ହେଲେ ଲଲାଟେନ୍ଦୁ, ଯଯାତି ବା ଅନ୍ୟ ରାଜାମାନେ କେତେ ଶକାବ୍ଦରୁ କେତେ ଶକାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ, ଏହା ସ୍ଥିର କରିବା ତାଙ୍କ ପକ୍ଷରେ ସହଜ ହୋଇଥିବ; କାରଣ କେଶରୀରାଜାମାନଙ୍କ କ୍ରମ ଓ ରାଜତ୍ୱକାଳମାନ ସେ କିମ୍ବଦନ୍ତୀରୁ ପାଇଥିଲେ । ପାଞ୍ଜୀର ଶକାବ୍ଦ ଗଣନା ଭିତ୍ତି-ହୀନ ନୁହେ ବୋଲି ମନେ ହୁଏ । ଯେତେଦୂର ସମ୍ଭବ, ଭୁବନେଶ୍ୱର ମନ୍ଦିରର ନିର୍ମାଣକାଳ ସମ୍ବନ୍ଧରେ ଯେଉଁ ଶ୍ଳୋକଟି ଚଳି ଆସିଛି, ତାହାକୁହିଁ ଭିତ୍ତିକରି ପାଞ୍ଜୀକାର ଶକାବ୍ଦ ଗଣନା ଆରମ୍ଭ କରିଥିଲେ । ଶ୍ଳୋକଟି ଏହି—

ଗଜାଷ୍ଟେଷୁ ମିତେ ଜାତେ ଶାକାବ୍ଦେ କୃତ୍ତିବାସସଃ
ପ୍ର ସାଦମକରୋଦ୍ ରାଜା ଲଲାଟେନ୍ଦୁସ୍ତୁ କେଶରୀ ।

ଏଠାରେ ଶକାବ୍ଦ ଶବ୍ଦମାନଙ୍କ ଦ୍ୱାରା ପ୍ରକାଶ କରାଯାଇଛି । ଗଜ ( ଅଷ୍ଟଦିଗ୍‌ଗଜ ) = ୮, ଅଷ୍ଟ = ୮ ଇଷୁ = ୫ । "ଅଙ୍କସ୍ୟ ବାମତୋ ଗତିଃ" ଏହି ନୀତି ଅନୁସାରେ ଅଙ୍କଗୁଡ଼ିକୁ ଡାହାଣଆଡ଼ୁ ପଢ଼ିଲେ ଶକାବ୍ଦଟି ୫୮୮ ହେଉଛି । ଏଣୁ ସମସ୍ତ ଶ୍ଳୋକଟିର ଅର୍ଥ ଏହି ଯେ ୫୮୮ ଶକାବ୍ଦ (ଖ୍ରୀଷ୍ଟାବ୍ଦ ୬୬୬)ରେ ରାଜା ଲଲାଟେନ୍ଦୁ କେଶରୀ କୃତ୍ତିବାସଙ୍କ ମନ୍ଦିର ନିର୍ମାଣ କରିଥିଲେ । ଓଡ଼ିଶାର ଅନେକ ଐତିହାସିକ ଭୁବନେଶ୍ୱର ମନ୍ଦିର ୬୬୬ ଖ୍ରୀଷ୍ଟାବ୍ଦରେ ନିର୍ମିତ ହୋଇଥିଲା ବୋଲି ଲେଖିଯାଇଛନ୍ତି । ଖାଲି ସେତିକି ନୁହେ, ଏହି ଶ୍ଳୋକଟି ଲିଙ୍ଗରାଜମନ୍ଦିରର ଗୋଟିଏ ଶିଳାରେ ଖୋଦିତ ହୋଇଛି ବୋଲି ମଧ୍ୟ ସେମାନେ ଲେଖି-ଯାଇଛନ୍ତି । ସ୍ୱର୍ଗୀୟ ଫାର୍ଗୁସନ୍ ସାହେବ ମଧ୍ୟ ସ୍ଥାନୀୟ ଲୋକ-ମାନଙ୍କ କଥାରେ ବିଶ୍ୱାସ କରି ଏହି ଶ୍ଳୋକ ଅନୁସାରେ ଲିଙ୍ଗରାଜ-

ମନ୍ଦିର ୬୨୭ ଖ୍ରୀଷ୍ଟାବ୍ଦରେ ନିର୍ମିତ ହୋଇଥିଲା ବୋଲି ତାଙ୍କ ପୁସ୍ତକର ୨ୟ ସଂସ୍କରଣରେ ଲେଖିଥିଲେ; କିନ୍ତୁ ଫାର୍ଗୁସନ୍‌ଙ୍କ ମୃତ୍ୟୁ ପରେ ବାର୍‌ଜେସ୍ ସାହେବ ଫାର୍ଗୁସନ୍‌ଙ୍କ ପୁସ୍ତକର ସମ୍ପାଦନାଭାର ନେଲେ । ସେତେବେଳେ ସେ ଏହି ତାରିଖକୁ ବଦଳାଇବାପାଇଁ ବାଧ୍ୟ ହେଲେ । ଓଡ଼ିଆ ଓ ବୈଦେଶିକ ପଣ୍ଡିତ ମାନେ ସ୍ଥାନୀୟ ଖବରରେ ବିଶ୍ୱାସ କରି ଏପରି ଭ୍ରମରେ ପଡ଼ିଛନ୍ତି । ଏହି ଶ୍ଳୋକଟି ଲିଙ୍ଗରାଜ ମନ୍ଦିରରେ ଲେଖା ହୋଇଛି ବୋଲି ଭୁବନେଶ୍ୱରରେ ଯେଉଁ ଉଡ଼ାଖବର ମିଳେ, ତାହା କୁଆ ଉଡ଼ିବା-ସ୍ଥାନରେ କୁଆ ଉଡ଼ିବାଭଳି ଗୋଟିଏ ମିଥ୍ୟା ଓ ଅସମ୍ଭବ କଥା । ଶ୍ଳୋକଟି ଯେ କିମ୍ବଦନ୍ତୀ ଆକାରରେ ଚଳି ଆସିଛି, ଏହା ସତ୍ୟ; କିନ୍ତୁ ଏହା ଯେ ଲିଙ୍ଗରାଜମନ୍ଦିରର କୌଣସି ଅଂଶରେ ଖୋଦିତ ହୋଇଛି, ଏ କଥା ଖାଲି ମିଥ୍ୟା ନୁହେ, ଅସମ୍ଭବ ମଧ୍ୟ । ଓଡ଼ିଶାରେ ଗଙ୍ଗରାଜତ୍ୱର ବହୁପୂର୍ବରୁ ଲିଙ୍ଗରାଜମନ୍ଦିର ସୋମବଂଶୀ-କେଶରୀ-ରାଜାମାନଙ୍କ ଦ୍ୱାରା ନିର୍ମିତ ହୋଇଥିଲା; କିନ୍ତୁ ଏହି ସମୟରେ କୋଶଳ, ଉତ୍କଳ, ବଙ୍ଗ ଓ ମଗଧର କୌଣସି ଅଂଶରେ ଶକାବ୍ଦ ବ୍ୟବହୃତ ହେଉ ନଥିଲା । ଏପରି ସ୍ଥଳେ ଶକାବ୍ଦ ସମ୍ବଳିତ ଶ୍ଳୋକଟିଏ ଲିଙ୍ଗରାଜ ମନ୍ଦିରର ନିର୍ମାଣ କାଳରେ ଲେଖା ହୋଇଥିବା କଥା ଖାଲି ମିଥ୍ୟା ନୁହେ, ଅସମ୍ଭବ ମଧ୍ୟ ।

ଏଣୁ ଲିଙ୍ଗରାଜ ମନ୍ଦିର ଯେତେବେଳେ ନିର୍ମିତ ହେଲା, ସେତେବେଳେ ଏହି ଶ୍ଳୋକଟି ରଚିତ ହୋଇଥିବା କଦାପି ସମ୍ଭବ ନୁହେ । କିନ୍ତୁ ଗଙ୍ଗ ରାଜତ୍ୱ କାଳରେ ଏହି ଶ୍ଳୋକଟି ରଚିତ ହୋଇଥିବା ଖୁବ୍ ସମ୍ଭବ । ଗଙ୍ଗମାନେ ଓଡ଼ିଶାରେ ସର୍ବପ୍ରଥମେ ଶକାବ୍ଦ ପ୍ରଚଳନ କରିବା ସଙ୍ଗେ ସଙ୍ଗେ ଶକାବ୍ଦମାନଙ୍କୁ

ଶବ୍ଦଦ୍ୱାରା ପ୍ରକାଶ କରିବାର ରୀତି ମଧ୍ୟ ପ୍ରଚଳନ କଲେ । ଗଙ୍ଗ-ପ୍ରଶସ୍ତିକାରମାନେ ତାମ୍ର ଓ ଶିଳାଲେଖମାନଙ୍କରେ ଶକାବ୍ଦ-ମାନଙ୍କୁ ଶବ୍ଦଦ୍ୱାରା କିପରି ପ୍ରକାଶ କରିଯାଇଛନ୍ତି, ତାର କେତୋଟି ଉଦାହରଣ ଦେଲେ, ବିଷୟଟି ଆହୁରି ସ୍ପଷ୍ଟ ହେବ ।

ଓଡ଼ିଶାରେ ଗଙ୍ଗବଂଶର ସ୍ଥାପୟିତା ଚୋଡ଼ଗଙ୍ଗ ଦେବଙ୍କ ଅଭିଷେକ ସମୟର ସୂଚନା ଦେବାକୁ ଯାଇ ପ୍ରଶସ୍ତିକାର ଲେଖିଛନ୍ତି— "ଶାକାବ୍ଦେ ନନ୍ଦ-ରନ୍ଧ୍ର-ଗ୍ରହଗଣଗଣିତେ କୁମ୍ଭ ସଂସ୍ଥେ ଦିନେଶେ" ଇତ୍ୟାଦି । ନନ୍ଦ (ନବନନ୍ଦ) = ୯, ରନ୍ଧ୍ର (ଶରୀରର ନବଦ୍ୱାର) = ୯, ଗ୍ରହଗଣ (ନବଗ୍ରହ) = ୯ । ଅତଏବ ୯୯୯ ଶକାବ୍ଦ (ଖ୍ରୀ ୧୦୭୭) ର କୁମ୍ଭମାସରେ ଚୋଡ଼ଗଙ୍ଗଦେବ ଅଭିଷିକ୍ତ ହୋଇଥିଲେ ।

ଚୋଡ଼ଗଙ୍ଗଦେବ ଯେ ଲିଙ୍ଗରାଜ ମନ୍ଦିରରେ ଦୀପଦାନ କରିଥିଲେ, ଏ କଥା ଏହି ମନ୍ଦିରର ଗୋଟିଏ ଶିଳାଲେଖରେ ବର୍ଣ୍ଣିତ ଅଛି; ସେ କେବେ ଦୀପଦାନ କରିଥିଲେ, ଏ କଥା ପ୍ରକାଶ କରିବାକୁ ଯାଇ ପ୍ରଶସ୍ତିକାର ଲେଖିଛନ୍ତି—"ଶାକାବ୍ଦେ ଋତୁରାମ-ଖେନ୍ଦୁ ଗଣିତେ" ଇତ୍ୟାଦି । ଋତୁ (ଷଡ଼ଋତୁ) = ୬, ରାମ (ପରଶୁରାମ, ଶ୍ରୀରାମ, ବଳରାମ) = ୩, ଖ (ଆକାଶ) = ୦, ଇନ୍ଦୁ (ଚନ୍ଦ୍ର) = ୧ । ଅଙ୍କ ବାମ ଦିଗକୁ ଗତି କରେ । ଅତଏବ ୧୦୩୬ ଶକାବ୍ଦ ବା ୧୧୧୪ ଖ୍ରୀଷ୍ଟାବ୍ଦରେ ଚୋଡ଼ଗଙ୍ଗଦେବ ଲିଙ୍ଗରାଜମନ୍ଦିରରେ ଦୀପଦାନ କରିଥିଲେ ।

ଅନଙ୍ଗଭୀମଦେବଙ୍କ କନ୍ୟା ଚନ୍ଦ୍ରିକାଦେବୀ କେବେ ଅନନ୍ତ ବାସୁଦେବ ମନ୍ଦିର ନିର୍ମାଣ କଲେ, ଏହା ପ୍ରକାଶ କରିବାକୁ ଯାଇ

ପ୍ରଶସ୍ତିକାର ଲେଖିଛନ୍ତି—"ଅମ୍ବ ବ୍ୟୋମ—ଖଯୁଗ—ଫଣୀନ୍ଦ୍ର—ରସନାଚନ୍ଦ୍ରପ୍ରମାଣେମିତା।" ବ୍ୟୋମ (ଆକାଶ) = ୦, ଖଯୁଗ (ଆକାଶ) = ୦, ଫଣୀନ୍ଦ୍ରରସନା (ନାଗରାଜାର ଜିଭ) = ୨, ଚନ୍ଦ୍ର = ୧। ଅଙ୍କ ବାମଗତିକୁ ଗତି କରେ। ଅତଏବ ୧୨୦୦ ଶକାବ୍ଦ ବା ୧୨୭୮ ଖ୍ରୀଷ୍ଟାବ୍ଦରେ ଚନ୍ଦ୍ରିକାଦେବୀ ଅନନ୍ତବାସୁଦେବ ମନ୍ଦିର ନିର୍ମାଣ କରିଥିଲେ।

ଗଙ୍ଗ ପ୍ରାଚୀନ ଲେଖମାନଙ୍କରୁ ଏହିପରି ବହୁ ପ୍ରମାଣ ଦିଆଯାଇ ପାରେ ଯେ ଗଙ୍ଗରାଜତ୍ୱରେ ଶକାବ୍ଦମାନଙ୍କ ଶବ୍ଦ ଦ୍ୱାରାହିଁ ବେଶୀ ଭାବରେ ପ୍ରକାଶ କରାଯାଇ ଥିଲା। କୃତ୍ତିବାସଙ୍କ ମନ୍ଦିର ନିର୍ମାଣକାଳ ସମ୍ବନ୍ଧରେ ଯେଉଁ ଶ୍ଳୋକଟି ଶୁଣା ଯାଉଅଛି, ସେଥିରେ ଶକାବ୍ଦଟିକୁ ଶବ୍ଦଦ୍ୱାରା ପ୍ରକାଶ କରାଯାଇଛି। ଏଣୁ ଏହା ଗଙ୍ଗରାଜତ୍ୱରେ ବା ତାର ପରବର୍ତ୍ତୀ ଯୁଗରେ ରଚିତ ହୋଇ ଥିବ। ସୂର୍ଯ୍ୟବଂଶର ସ୍ଥାପୟିତା କପିଳେନ୍ଦ୍ରଦେବ ତାଙ୍କ ରାଜତ୍ୱର ଆରମ୍ଭ ଅର୍ଥାତ୍ ୧୪୩୫ ଖ୍ରୀଷ୍ଟାବ୍ଦରୁ ଗୋଟିଏ ଅବ୍ଦ ଚଳାଇଥିଲେ ଓ ତାହା ବର୍ତ୍ତମାନ କପିଳେନ୍ଦ୍ରାବ୍ଦ ବା କପିଳାବ୍ଦ ନାମରେ ଓଡ଼ିଶାର ସମସ୍ତ ପାଞ୍ଜିରେ ଦେଖାଯାଏ। ତା ଛଡ଼ା, ସୂର୍ଯ୍ୟବଂଶୀ ଲେଖମାନଙ୍କରେ ଶକାବ୍ଦ କ୍ୱଚିତ ଦେଖାଯାଏ। ଏଣୁ ଗଙ୍ଗରାଜତ୍ୱରେହିଁ ଏହି ଶ୍ଳୋକଟି ରଚିତ ହୋଇଥିବା ସମ୍ଭବ। କିନ୍ତୁ ଏହି ସିଦ୍ଧାନ୍ତରେ ଉପନୀତ ହେଲେମଧ୍ୟ ଏହି ଶ୍ଳୋକଟି ଯେ ଭ୍ରମାତ୍ମକ, ଏପରି କହିବାର ମଧ୍ୟ କୌଣସି କାରଣ ନାହିଁ। କୃତ୍ତିବାସଙ୍କ ମନ୍ଦିରର ନିର୍ମାଣକାଳ ସମ୍ବନ୍ଧରେ ଯେଉଁ ତାରିଖଟି ଶୁଣାଯାଉଥିଲା, ତାକୁ କୌଣସି ପଣ୍ଡିତ ଗଙ୍ଗରାଜତ୍ୱରେ ଶକାବ୍ଦ ଦ୍ୱାରା ପ୍ରକାଶ କରି ଶ୍ଳୋକଟି ରଚନା କରିପାରିଥାନ୍ତି। ଏଣୁ

ବର୍ତ୍ତିମାନ ଦେଖିବାର କଥା ଏହି ଯେ ଏ ଶ୍ଳୋକଟି ମୌଳିକ ବା କାଳକ୍ରମେ ଏହା ରୂପାନ୍ତରିତ ହୋଇଛି । ଅନୁସନ୍ଧାନଦ୍ୱାରା ଜଣା ଯାଏ ଯେ ଏହା ରୂପାନ୍ତରିତ ହୋଇଛି । ମୌଳିକ ଶ୍ଳୋକଟି ଗୋଟିଏ ତାଳପତ୍ର ପୋଥିରେ ଲିପିବଦ୍ଧ ହୋଇ ଥିବାର ପ୍ରମାଣ ମଧ୍ୟ ମିଳୁଛି । ଲିପିବଦ୍ଧ ଶ୍ଳୋକଟି ଏହି—

ଗଜାଷ୍ଟାଷ୍ଟମିତେ ଜାତେ ଶାକାବ୍ଦେ କୃତ୍ତିବାସସ୍ୟ ।
ପ୍ରାସାଦଂ କୃତବାନ୍ ଧୀମାଣ୍ ଲଲାଟେନ୍ଦୁଷ୍ଟ କେଶରୀ ॥

ଗଜ (ଅଷ୍ଟଦିଗଗଜ)=୮, ଅଷ୍ଟ=୮, ଅଷ୍ଟ=୮ । ଏଣୁ ଲିପିବଦ୍ଧ ଶ୍ଳୋକଟି ଅନୁସାରେ ଧୀମାନ୍ ଲଲାଟେନ୍ଦୁକେଶରୀ ୮୮୮ ଶକାବ୍ଦ ବା ୯୬୬ ଖ୍ରୀଷ୍ଟାବ୍ଦରେ କୃତ୍ତିବାସଙ୍କ ମନ୍ଦିର ନିର୍ମାଣ କରିଥିଲେ । ଏହି ଶ୍ଳୋକଟି ଯେଉଁ ତାଳପତ୍ର ପୋଥିରେ ଲିପିବଦ୍ଧ ହୋଇଛି, ତାହା କେଉଁଝରର ରାଜବାଟିର କେଉଁଝର ଷ୍ଟେଟ ରତ୍ନଙ୍କ ଓ ପଣ୍ଡିତ (ବର୍ତ୍ତିମାନ ଅଧ୍ୟାପକ) ବାନାମ୍ବର ଆଚାର୍ଯ୍ୟଙ୍କ ତତ୍ତ୍ୱାବଧାନରେ ଥିଲା । ୧୯୩୭ ଖ୍ରୀଷ୍ଟାବ୍ଦରେ ପଣ୍ଡିତ ବିନାୟକ ମିଶ୍ର କେଉଁଝର ଯାଇ ଯେଉଁ ତାଳପତ୍ର ପୋଥିଟିରେ ଏହି ଶ୍ଳୋକଟି ଲେଖା ଅଛି, ତାର ଫୋଟଗ୍ରାଫ୍ ନେଇଥିଲେ ଓ କେଉଁଝରର ଭେଙ୍ଗାପଣି ଓ ସୀତାଭିଞ୍ଜିରେ ଥିବା ପ୍ରାଚୀନ ଲେଖ, ମୂର୍ତ୍ତି ଓ ଚିତ୍ରକଳା ସହିତ ଏହାକୁ ୧୯୩୮ ମସିହାର ମଡାର୍ଣ୍ଣ ରିଭ୍ୟୁ ମାର୍ଚ୍ଚ ସଂଖ୍ୟାରେ ପ୍ରକାଶ କରିଥିଲେ । ଲେଖକ ଛୁଟିବିଷୟରେ କେଉଁଝର ଯାଇ ପଣ୍ଡିତ ମିଶ୍ରଙ୍କୁ ସାହାଯ୍ୟ କରିଥିବାରୁ ପଣ୍ଡିତ ମହାଶୟ ଲେଖକର ନାମ ମଧ୍ୟ ଏହି ପ୍ରବନ୍ଧରେ ଦେଇଛନ୍ତି । ଉଲ୍ଲିଖିତ ଶ୍ଳୋକଟି ସମ୍ବନ୍ଧରେ କାହାରି ସନ୍ଦେହ ହେଲେ

ମହାର୍ଣ୍ଣବେଶ୍ବରଙ୍କ ଏହି ସଂଖ୍ୟାର ୩୦୫ ପୃଷ୍ଠାରେ ଏହାର ପାଠ ଓ ଆଲୋଚନା ଏବଂ ୩୧୭ ପୃଷ୍ଠାରେ ତାଳପତ୍ରଟିର ଫଟୋଗ୍ରାଫ୍ ପାଠ କରିପାରିବେ ।

ବର୍ତ୍ତମାନ ପ୍ରଶ୍ନ ହେଉଛି—କୃତ୍ତିବାସଙ୍କ ମନ୍ଦିରର ନିର୍ମାଣ କାଳ ସମ୍ବନ୍ଧୀୟ ଏହି ଶ୍ଳୋକ ଦୁଇଟି ମଧ୍ୟରୁ କେଉଁଟିକୁ ଗ୍ରହଣ କରାଯିବ ? ଲିଖିତ ବିଷୟକୁ ହିଁ ବିଶ୍ୱାସ କରିବା ଗବେଷଣାର ମୌଳିକ ନୀତି : କାରଣ ଯାହା ଜନମୁଖରେ ଶୁଣାଯାଏ, ତାହା ବିକୃତ ହେବା ଅନିବାର୍ଯ୍ୟ ହୋଇପଡ଼େ । ଏହି ଶ୍ଳୋକ ଦୁଇଟି ମଧ୍ୟରୁ ପ୍ରଥମଟି ଅନୁସାରେ ଶକାବ୍ଦ ୫୮୮ (ଖ୍ରୀ ୬୬୬) ଓ ଦ୍ୱିତୀୟଟି ଅନୁସାରେ ଶକାବ୍ଦ ୮୮୮ (ଖ୍ରୀ: ୯୬୬)ରେ କୃତ୍ତିବାସଙ୍କ ମନ୍ଦିର ନିର୍ମିତ ହୋଇଥିଲା । ଏଣୁ ଉଭୟକାଳ ମଧ୍ୟରେ ୩୦୦ ବର୍ଷ ତଫାତ୍ ହୋଇଯାଉଛି । କିନ୍ତୁ ପଞ୍ଜୀକାର ଯେ ପ୍ରଥମ ଶ୍ଳୋକଟି ଅନୁସାରେ ଗଣନା ଆରମ୍ଭ କରିଥିଲେ, ଏହା ସୁନିଶ୍ଚିତ । କାରଣ ମାଦଳା ପାଞ୍ଜିରେ ପୃ ୮ ଷ୍ଠାରେ ଲେଖାଅଛି—"ଏ ରାଜାଙ୍କ (ଲଲାଟେନ୍ଦୁକେଶରୀଙ୍କ) ଅ ୨୭ ଅଙ୍କ ମୀନ ଦି ୧୫ ନ ସରିକି ଭୁବନେଶ୍ୱର ଦେଉଳ ପ୍ରତିଷ୍ଠା ହୋଇଥିଲା । ଏଦିନ ସରିକି ଶକାବ୍ଦ ୫୮୮ । ଲଲାଟେନ୍ଦୁକେଶରୀଙ୍କ ବାକି ବ ୧୮ ର୍ଷ ।" କେଶରୀ ବଂଶର ଆଲୋଚନା କଲାବେଳେ ପ୍ରଦର୍ଶିତ ହୋଇଛି ଯେ ତାମ୍ର ଶିଳା ଲେଖ ଅନୁସାରେ ସୋମବଂଶୀମାନେ ଖ୍ରୀଷ୍ଟୀୟ ୧୦ ମ ଓ ୧୧ଶ ଶତାବ୍ଦୀରେ ରାଜତ୍ୱ କରିଥିଲେ । ପାଞ୍ଜିକାର ଯଦି ୨ୟ ଶ୍ଳୋକଟି ଅନୁସାରେ ୮୮୮ ଶକାବ୍ଦରୁ ଗଣନା ଆରମ୍ଭ କରିଥାନ୍ତେ, ତାହାହେଲେ ସେ କେଶରୀବଂଶକୁ ମଧ୍ୟ ଠିକ୍ ଏହି ୧୦ମ ଓ ୧୧ଶ ଶତାବ୍ଦୀରେ ସ୍ଥାନ ଦେଇଥାନ୍ତେ । ଏଣୁ ପାଞ୍ଜିରୁ ପ୍ରାପ୍ତ

କେଶରୀବଂଶ ଓ ତାମ୍ର ଶିଳାଲେଖରୁ ପ୍ରାପ୍ତ ସୋମବଂଶର ରାଜତ୍ୱକାଳ ମଧ୍ୟରେ ଆଜ ଯେଉଁ ବିରାଟ ବ୍ୟବଧାନ ଦେଖାଯାଏ; ତାହା ଦେଖାଯାଇ ନଥାନ୍ତା, କିମ୍ବା ପାଞ୍ଜୀରେ ଥିବା କେଶରୀରାଜାମାନଙ୍କର ସଂଖ୍ୟା ମଧ୍ୟ ଏତେ ବେଶୀ ହୋଇ ନଥାନ୍ତା । ପ୍ରାରମ୍ଭିକ ଭ୍ରମ-ହେତୁ ପାଞ୍ଜୀକାରଙ୍କ ହାତରେ ୩୦୦ ବର୍ଷ ଅଧିକ ସମୟ ରହିଲା । ଏହି ଦୀର୍ଘ ସମୟକୁ ବ୍ୟବହାର କରିବାକୁ ଯାଇ ସେ କେଶରୀ-ଉପାଧିଧେୟ ଯେତେ ରାଜାଙ୍କ ନାମ ପାଇଲେ ସେ ସମସ୍ତଙ୍କୁ ତଥା-କଥିତ କେଶରୀବଂଶ ଭିତରେ ପୂରାଇ ଏହି ବଂଶକୁ ଗଙ୍ଗବଂଶ ପ୍ରାରମ୍ଭ ପର୍ଯ୍ୟନ୍ତ ଟାଣି ନେବାକୁ ବାଧ୍ୟ ହେଲେ ।

ବର୍ତ୍ତମାନ ବିଭିନ୍ନ ଦିଗରୁ ଆଲୋଚନା କଲେ ଏହି ସିଦ୍ଧାନ୍ତରେ ଉପନୀତ ହେବାକୁ ହୁଏ । କିନ୍ତୁ କୃତ୍ତିବାସଙ୍କ ମନ୍ଦିରର ନିର୍ମାଣକାଳ ସମ୍ବନ୍ଧରେ ପ୍ରକୃତରେ କୌଣସି ତାରଖ କିମ୍ବଦନ୍ତୀ ଆକାରରେ ଚଳି ଆସିଥିଲା କି ନା ଓ ଉଲ୍ଲିଖିତ ଶ୍ଳୋକଟି କେବେ ରଚିତ ହୋଇଥିଲା, ଏ ସମସ୍ତ ସମ୍ଭାବନାର ନିଷ୍ପତ୍ତି ହୋଇ ନହିଁ-ଥିବା ପର୍ଯ୍ୟନ୍ତ ଏହି ସିଦ୍ଧାନ୍ତକୁ ନିର୍ଦ୍ଦିଷ୍ଟ ବା ଅଭ୍ରାନ୍ତ ବୋଲି କୁହା-ଯାଇ ପାରିବ ନାହିଁ । କେଶରୀରାଜବଂଶର ଆଲୋଚନା କଲାବେଳେ ଦେଖାଯାଇଛି ଯେ ପ୍ରଥମ ଯଯାତି ୯୫୦ ଠାରୁ ୯୭୫ ଖ୍ରୀଷ୍ଟାବ୍ଦ ମଧ୍ୟରେ ଓ ୨ୟ ଯଯାତି ୧୦୨୨ ଠାରୁ ୧୦୪୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ରାଜତ୍ୱ କରିଥିଲେ । ଉଲ୍ଲିଖିତ ଶ୍ଳୋକରେ ଥିବା ୯୬୭ ଖ୍ରୀଷ୍ଟାବ୍ଦଟି ପ୍ରଥମ ଯଯାତିଙ୍କ ରାଜତ୍ୱକାଳରେ ପଡୁଛି । କିନ୍ତୁ କଳା ଓ ସ୍ଥାପତ୍ୟ ଦୃଷ୍ଟିରୁ ପଣ୍ଡିତମାନେ ଲିଙ୍ଗରାଜମନ୍ଦିରକୁ ୧୧ଶ ଶତାବ୍ଦୀରେ ସ୍ଥାନ ଦେଉଛନ୍ତି । କୃତ୍ତିବାସ କହିଲେ ଯେ କୌଣସି ଶିବଲିଙ୍ଗକୁ ବୁଝାଏ । ହୁଏତ ୯୬୭ ଖ୍ରୀ: ରେ ୧ମ ଯଯାତି ଭୁବନେଶ୍ୱରରେ

କୌଣସି ଶିବମନ୍ଦିର ନିର୍ମାଣ କରିଥିଲେ । କାଳକ୍ରମେ ଲିଙ୍ଗରାଜ ମନ୍ଦିର ପ୍ରାଧାନ୍ୟଲାଭ କଲା ପରେ ମୁକ୍ତେଶ୍ୱରର ନିର୍ମାଣକାଳ ଲିଙ୍ଗରାଜ ମନ୍ଦିର ଠାରେ ଆରୋପ କରାହୋଇଛି । ଉଭୟ ରାଜାଙ୍କ ନାମ ଯଯାତି ଥିବାରୁ ଓ କୃତ୍ତିବାସ କହିଲେ ଯେ କୌଣସି ଶିବ-ଲିଙ୍ଗଙ୍କୁ ବୁଝାଉଥିବାରୁ କିମ୍ବଦନ୍ତୀରେ ଏପରିଭ୍ରମ ଅସମ୍ଭବ ନୁହେଁ, ବରଂ ସ୍ୱାଭାବିକ । ଲଲାଟେନ୍ଦୁ ନାମଟି ଉଦ୍ୟୋତକେଶରୀଙ୍କ ଉପନାମ ହୋଇଥିବା ଖୁବ୍ ସମ୍ଭବ ।



## କେଶରୀବଂଶର ସଂଖ୍ୟାଦି ନିର୍ଣ୍ଣୟ

ଊନବିଂଶ ଶତାବ୍ଦୀର ପ୍ରଥମ ପାଦରୁ ମାଦଳାପାଞ୍ଜୀ ଓଡ଼ିଶାର ଐତିହାସିକ ଉପାଦାନ ରୂପେ ବ୍ୟବହୃତ ହୋଇଅଛି । ୧୮୨୨ ମସୀହାରେ ଷ୍ଟାର୍ଲିଂ, ଏହାଙ୍କ ପରେ ଭବାନୀଚରଣ ବନ୍ଦୋପାଧ୍ୟାୟ, ୧୮୭୨ ମସୀହାରେ ହଣ୍ଟର୍ ଓ ୧୭୮ ମସୀହାରେ ପ୍ୟାରୀମୋହନ ଅଗ୍ରୁଙ୍କ ପାଞ୍ଜୀବର୍ଣ୍ଣିତ କେଶରୀବଂଶମାନଙ୍କ ନାମ ଓ ସଂଖ୍ୟା ପୂର୍ଣ୍ଣତଃ ବା ଅଂଶତଃଭାବରେ ସ୍ୱ ସ୍ୱ ପୁସ୍ତକରେ ପ୍ରକାଶ କରିଯାଇଛନ୍ତି । ଶେଷୋକ୍ତ ପଣ୍ଡିତଦ୍ୱୟଙ୍କ ପୁସ୍ତକମାନ ଆଲୋଚନା କଲେ ଜଣାଯାଏ ଯେ ମାଦଳାପାଞ୍ଜୀ ଅବଲମ୍ବନରେ ଲିଖିତ ଭବାନୀ ଚରଣଙ୍କ ପୁରୁଷୋତ୍ତମ ଚନ୍ଦ୍ରିକା ନାମକ କ୍ଷୁଦ୍ର ବଙ୍ଗଳା ପୁସ୍ତକରେ କେଶରୀରଜାମାନଙ୍କ ସମ୍ବନ୍ଧରେ ଯାହା ଅଛି, ଏମାନେ ତାହାହିଁ ଗ୍ରହଣ କରିଛନ୍ତି । ହଣ୍ଟର ସାହେବ ଭବାନୀଚରଣଙ୍କ ପୁରୁଷୋତ୍ତମଚନ୍ଦ୍ରିକା ଉପରେ ନିର୍ଭର କରିଥିବା କଥା ତାଙ୍କ "ଓଡ଼ିଶା"ନାମକ ପୁସ୍ତକର ୧ମ ଭାଗ ୭ମ ପରିଶିଷ୍ଟ ୧୮୭ପୃଷ୍ଠାରେ ଲେଖିଯାଇଛନ୍ତି । ପ୍ୟାରୀମୋହନଙ୍କ ଓଡ଼ିଶାର ଇତିହାସକୁ ଆଲୋଚନା କଲେ ଦେଖାଯାଏ ଯେ, ସେ ହଣ୍ଟରଙ୍କ ପୁସ୍ତକରେ ଥିବା କେଶରୀବଂଶ ତାଲିକା ଉପରେହିଁ ନିର୍ଭର କରିଛନ୍ତି । ଏମାନଙ୍କ ଛଡ଼ା ଫିଲ୍ଡ୍, ରାଜେନ୍ଦ୍ରଲାଲମିତ୍ର ନଗେନ୍ଦ୍ରନାଥ ବସୁ, ମନମୋହନ ଚକ୍ରବର୍ତ୍ତୀ, ରାଜପୁଚନ୍ଦ୍ର ମଜୁମଦାର, ମନମୋହନ ଗାଙ୍ଗୁଲୀ, ତାରିଣୀଚରଣ ରଥ, ସଦାଶିବ କାବ୍ୟକଣ୍ଠ, କୃପାସିନ୍ଧୁ

ମିଶ୍ର, ଉମାପ୍ରସାଦ ଚନ୍ଦ, ରାଖାଲଦାସ ବେନର୍ଜୀ, ଜଗବନ୍ଧୁ ସିଂହ, ପରମାନନ୍ଦ ଆଚାର୍ଯ୍ୟ, ଆର୍ତ୍ତବଲ୍ଲଭ ମହାନ୍ତି, ସୁବାଡ଼ି, ସତ୍ୟନାରାୟଣ ରାଜଗୁରୁ, ହରେକୃଷ୍ଣ ମହତାବ ଓ ମନ୍ମଥନାଥ ଦାସ ପ୍ରଭୃତି କେଶରୀବଂଶ ସମ୍ବନ୍ଧରେ ଅନେକ ବହୁତ ଆଲୋଚନା କରିଛନ୍ତି, କିନ୍ତୁ କେବଳ ଜଗବନ୍ଧୁ ସିଂହ ଓ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଛଡ଼ା ଅନ୍ୟ କେହି କେଶରୀରାଜା-ମାନଙ୍କ ସମ୍ପୂର୍ଣ୍ଣ ବଂଶାବଳୀ ଓ ସଂଖ୍ୟା ଦେଇ ନାହାନ୍ତି । ଆର୍ତ୍ତ-ବଲ୍ଲଭ ମହାନ୍ତି ତିନୋଟି ପୋଥି ସାହାଯ୍ୟରେ ଯେଉଁ ମାଦଳପାଞ୍ଜୀ ପୁସ୍ତକ ପ୍ରକାଶ କରିଛନ୍ତି, ସେଥିରେ ଥିବା କେଶରୀରାଜାମାନଙ୍କ ସଂଖ୍ୟା ହେଉଛି ୬୫ । ଜଗବନ୍ଧୁ ସିଂହ ପ୍ରାୟ ୫୦ଟି କେଶରୀ-ରାଜାଙ୍କ ନାମ ଦେଇଛନ୍ତି ଓ ତା ଛଡ଼ା ଅନୁର ଅନେକ ନାମ ଅଛି ବୋଲି ଲେଖିଛନ୍ତି (ପ୍ରାଚୀନ ଉତ୍କଳ, ପୃ ୧୦୨ ପୃ) । ତାଙ୍କ ପ୍ରାଚୀନ ଉତ୍କଳରେ ଥିବା ନରକେଶରୀ, ଧୃତକେଶରୀ, ଚଣ୍ଡାଳ-କେଶରୀ, ଭୂପାଳକେଶରୀ, ଲକ୍ଷ୍ମୀକେଶରୀ, ରେଢଙ୍ଗକେଶରୀ, ଶିଶୁପାଳକେଶରୀ ଓ ଧର୍ମଶୀଳକେଶରୀଙ୍କ ନାମ ମହାନ୍ତିଙ୍କ ପ୍ରକାଶିତ ମାଦଳାପାଞ୍ଜୀପୁସ୍ତକରେ ନାହିଁ । ପୂର୍ଣ୍ଣଚନ୍ଦ୍ର ରଥ ୧୯୪୮ ଗୋପବନ୍ଧୁ ସ୍ମୃତି ସଂଖ୍ୟା ସମାଜର ୨୯—୩୦ ପୃଷ୍ଠାରେ ଶୁଭଙ୍କରକେଶରୀ ଓ ମୁକୁନ୍ଦକେଶରୀ ବୋଲି ଯେଉଁ କେଶରୀରାଜାଦ୍ୱୟଙ୍କ ନାମ ପ୍ରକାଶ କରିଛନ୍ତି, ତାହା ମାଦଳାପାଞ୍ଜୀରେ ନାହିଁ । ଭୌମବଂଶର ଚାରିଜଣ ରାଜାଙ୍କ ନାମ ଶୁଭଙ୍କରଦେବ ଥିବାରୁ ଚୀନ ଦେଶର ଇତିହାସରୁ ପ୍ରାପ୍ତ ଏହି ଶୁଭଙ୍କରକେଶରୀଙ୍କୁ ଭୌମବଂଶୀୟ ରାଜା ବୋଲି ହିଁ ପଣ୍ଡିତମାନେ ସ୍ଥିର କରିଛନ୍ତି । କିନ୍ତୁ ମୁକୁନ୍ଦକେଶରୀ ନାମଟି କୌଣସି ଗ୍ରନ୍ଥରୁ ମିଳିନାହିଁ ।

ଉଲ୍ଲିଖିତ ପଣ୍ଡିତମାନଙ୍କ ଲେଖା ଆଲୋଚନା କଲେ ଏହି ସିଦ୍ଧାନ୍ତରେ ଉପନୀତ ହେବାକୁ ହୁଏ ଯେ କେଶରୀରାଜବଂଶର ସଂଖ୍ୟା କ୍ରମଶଃ ବଢ଼ିଚାଲିଛି । ୧୮୨୨ ମସୀହାରେ ପ୍ରକାଶିତ ଷ୍ଟାର୍ଲିଂଙ୍କ ପୁସ୍ତକରେ କେଶରୀରାଜାମାନଙ୍କ ସଂଖ୍ୟା ଥିଲା ୩୯; ୧୮୭୨ ମସୀହାରେ ପ୍ରକାଶିତ ହଣ୍ଟରଙ୍କ ପୁସ୍ତକରେ ଏହି ସଂଖ୍ୟା ବୃଦ୍ଧିପାଇ ହେଲା ୪୮; ଓ ୧୯୫୦ ମସୀହା ବେଳକୁ ବାହାର ପ୍ରକାଶିତ ପୁସ୍ତକରେ ଏହି ସଂଖ୍ୟା ଆହୁରି ବେଶୀ ବୃଦ୍ଧି ପାଇ ୬୫ ପର୍ଯ୍ୟନ୍ତ ଗଲା । ଭବିଷ୍ୟତରେ କେଶରୀରାଜା ସଂଖ୍ୟା ଯେ ଆହୁରି ବେଶୀ ବୃଦ୍ଧି ନ ପାଇବ, ଏ କଥା କେହି କହି ପାରିବେ ନାହିଁ । କୌଣସି ଐତିହାସିକ ରାଜବଂଶର ରାଜାମାନଙ୍କ ସଂଖ୍ୟାର ହ୍ରାସ ବା ବୃଦ୍ଧି ଘଟି ନ ପାରେ । କେଶରୀରାଜାମାନଙ୍କ ସଂଖ୍ୟା କ୍ରମଶଃ ବୃଦ୍ଧି ପାଉଥିବାରୁ ଏହାହିଁ ସ୍ପଷ୍ଟଭାବରେ ଓ ନିଃସନ୍ଦେହରେ ପ୍ରମାଣିତ ହେଉଛି ଯେ ନାନାସ୍ୱାର୍ଥ ବ୍ୟକ୍ତିମାନ କେଶରୀରାଜାମାନଙ୍କ ନାମମାନ ସୃଷ୍ଟି କରିବାରେ ଲାଗି ପଡ଼ିଛନ୍ତି । ଏହି ସୃଷ୍ଟ ନାମମାନଙ୍କୁ ଯଦି ଐତିହାସିକ ରୂପେ ଗ୍ରହଣ କରାଯାଏ, ତାହାହେଲେ ଓଡ଼ିଶାର ଇତିହାସ ଅବିଦ୍ୟାର ଆକାଶ-କୁସୁମ ରୂପେ ପରିଣତ ହେବ । ୧୮୭୫ ମସୀହାରେ ସ୍ୱର୍ଗୀୟ ପ୍ୟାରୀମୋହନ ଆଚାର୍ଯ୍ୟ ତରୁଣ ବୟସରେ ଓଡ଼ିଶା ଇତିହାସର ଯେଉଁ ଧାରା ସୃଷ୍ଟି କରିଥିଲେ, ତାହା ଚାଲି ଆସିଥିଲେ, ଓଡ଼ିଶାର ଇତିହାସ-ସଂକଳନ ଭିନ୍ନ ଆକାର ଧାରଣ କରିଥାନ୍ତା । ସମାଜ ଓ ସରକାରଙ୍କ ଦ୍ୱାରା ଅବଜ୍ଞାତ ଏହି ମେଧାବୀ ଯୁବକଙ୍କ ପାଣ୍ଡିତ୍ୟ, ପରିଶ୍ରମ, ସତ୍ୟନିଷ୍ଠା ଓ ସୂକ୍ଷ୍ମ ବିଚାରର ପରିଚୟ ତାଙ୍କ ଓଡ଼ିଶା ଇତିହାସର ପ୍ରତ୍ୟେକ ପୃଷ୍ଠାରେ ଅଛି । ଅବଶ୍ୟ ତାଙ୍କ ସମୟକୁ ଯେଉଁ ସବୁ ଐତିହାସିକ ଉପାଦାନ ମିଳିଥିଲା, ସେମାନଙ୍କ ଉପରେହିଁ ସେ ତାଙ୍କର ପାଣ୍ଡିତ୍ୟ

ଓ ବସ୍ତୁରଶକ୍ତ ପ୍ରୟୋଗ କରିଛନ୍ତି । ଇତିହାସ-ସଙ୍କଳନରେ ପାଣ୍ଡିତ୍ୟ ଅପେକ୍ଷା ବସ୍ତୁର ଶକ୍ତି ଅଧିକ ଆବଶ୍ୟକ ହୁଏ । ଆଗୃଣଙ୍କ ଇତିହାସରେ ଯଦି କିଛି ତ୍ରୁଟି ବିଚ୍ୟୁତ ଥାଏ, ତାହାହେଲେ ତାହା ତାଙ୍କ ବସ୍ତୁର କ୍ଷେତ୍ର ବା ବୈଜ୍ଞାନିକ ଦୃଷ୍ଟିଭଙ୍ଗିର ଅଭାବରୁ ନୁହେଁ, ଐତିହାସିକ ଉପାଦାନ ଅଭାବରୁ ଘଟିଛି । ସେ ତାଙ୍କ ଇତିହାସରେ ଲେଖିଛନ୍ତି:— "ଆମ୍ଭେମାନେ ପଞ୍ଜିକା ଲେଖକଙ୍କ ଅତି ପୂର୍ବ-କାଳର ରାଜ-ନିର୍ଘଣ୍ଟରେ ବିଶ୍ୱାସ ସ୍ଥାପନ କରି ନପାରି ତାହାକୁ ଏହି ପୃଷ୍ଠାମାନଙ୍କରୁ ବିସର୍ଜନ ଦେଲୁଁ (ପୃ ୨୦ ସ୍ଥା) ।" ଅନ୍ୟତ୍ର "ମାଦଳାପାଞ୍ଜିଲିଖିତ ଅତି ପୂର୍ବକାଳର ବୃତ୍ତାନ୍ତମାନଙ୍କ ସତ୍ୟ ବୋଲି ବିଶ୍ୱାସ କରିବାପାଇଁ ଆମ୍ଭେମାନେ କୌଣସି ଯୁକ୍ତି ଦେଖୁନାହୁଁ (ପୃ ୨୫ ସ୍ଥା) ।" ତା ଛଡ଼ା ମାଦଳାପାଞ୍ଜିର ଯଯାତିକେଶରୀଙ୍କୁ ସେ ତାମ୍ରଲେଖର ସୋମବଂଶୀ ରାଜା ଜନମେଜୟଙ୍କ ପୁତ୍ର ଯଯାତି (ପ୍ରଥମ) ବୋଲି ନିର୍ଣ୍ଣୟ କରି ଯାଇଛନ୍ତି (ପୃ ୦୨—୦୩ ସ୍ଥା) । ଯେତେବେଳେ ଇତିହାସ ଗବେଷଣା ଶୈଶବାବସ୍ଥାରେ ଥିଲା ଓ ସୋମବଂଶୀ ରାଜାମାନଙ୍କ ମାତ୍ର ଦୁଇଟି ତାମ୍ରଶାସନ ମିଳିଥିଲା, ସେତେବେଳେ ମନୀଷୀ ପ୍ୟାରୀମୋହନ ଏହି ଧାରା ସୃଷ୍ଟି କରି ଥିଲେ । କିନ୍ତୁ ତାଙ୍କ ପରେ ଆଜି ଏ ଧାରା ବଦଳିଲ ନାହିଁ । ଅବଶ୍ୟ ଓଡ଼ିଶାର ସମସ୍ତ ଐତିହାସିକଙ୍କ ପ୍ରତି ଏ କଥା ଲକ୍ଷ୍ୟ କରାଯାଇ ନାହିଁ ।

୧୮୨୨ ମସିହାର ୩୬ ଟି କେଶରୀରାଜାଙ୍କ ନାମ ବୃଦ୍ଧି ପାଇ ୧୯୫୦ ମସିହା ବେଳକୁ କପରି ଭାବରେ ୭୫ ଟି ନାମରେ ପରିଣତ ହୋଇଛି, ତାହାହିଁ ବର୍ତ୍ତମାନ ଆଲୋଚନା କରାଯାଉ । ବସ୍ତୁର ପ୍ରୟୋଗ କଲେ କେଶରୀବଂଶ ତାଲିକାର ଅଧିକାଂଶ ମୃଷ୍ଟି

ନାମ ଉପରେ ଅପେ ଅପେ ଧରା ପଡ଼ିଯାଏ, ତାହା ନିମ୍ନଲିଖିତ ଆଲୋଚନାରୁ ସହଜରେ ପ୍ରତିପାଦିତ ହେବ ।

ନରସିଂହ କେଶରୀ, କୂର୍ମ (କୂର୍ମ) କେଶରୀ, ରାମକେଶରୀ, ମଚ୍ଛ (ମତ୍ସ୍ୟ) କେଶରୀ, ବରାହକେଶରୀ, ବାମନକେଶରୀ, ପରଶୁ-କେଶରୀ । ଷ୍ଟାର୍ଲିଙ୍କ କେଶରୀବଂଶ ତାଲିକାର ୩୬ ଟି ନାମ ବୃଦ୍ଧି ପାଇ ହଣ୍ଟରଙ୍କ ତାଲିକାରେ ୪୫ ଟି ହୋଇଛି । ଯେଉଁ ଅଠୋଟି ନାମ ବୃଦ୍ଧି ପାଇଛି, ସେଥି ଭିତରେ ଲିଖିତ ୭ ଟି ନାମ ଅଛି । କେଶରୀ ଉପାଧିକୁ ବାଦ୍ ଦେଇ କ୍ରମ ପରିବର୍ତ୍ତନ କରିଦେଲେ ଏହି ନାମମାନଙ୍କରୁ ସାତୋଟି ଅବତାରର ନାମ ମିଳିଯାଏ, ଯଥା:— ମତ୍ସ୍ୟ, କୂର୍ମ, ବରାହ, ନୃସିଂହ, ବାମନ, ପରଶୁରାମ ଓ ରାମ । ମାଦଳାପାଞ୍ଜି ମତରେ କେଶରୀମାନେ ପଞ୍ଚମ ଶତାବ୍ଦୀରୁ ରାଜତ୍ୱ ଆରମ୍ଭ କରିଥିଲେ । କିନ୍ତୁ ଭାରତରେ ଅବତାରବାଦ ଅତି ପ୍ରାଚୀନ ହେଲେହେଁ ଦ୍ୱାଦଶ ଶତାବ୍ଦୀରେ କବି ଜୟଦେବ ପୁରୀରେ ଅବସ୍ଥାନ କରି ନ ଥିବାପର୍ଯ୍ୟନ୍ତ ଓଡ଼ିଶାର କଳା, ସ୍ଥାପତ୍ୟ ଓ ସାହିତ୍ୟରେ ଅବତାରବାଦର କୌଣସି ଚିହ୍ନ ବର୍ଣ୍ଣ ମିଳେ ନାହିଁ । ଅବଶ୍ୟ ଜୟଦେବଙ୍କ ସମୟରେ ଓ ପରେ ଓଡ଼ିଶାରେ ଅବତାରବାଦ ଏତେ ବେଶୀ ପ୍ରଚଳିତ ହେଲା ଯେ ଦଶଅବତାର ନାମରେ ଅଳଙ୍କାର ପର୍ଯ୍ୟନ୍ତ ତିଆରି ହେଲା । ଗୀତକ ଲରୁଣାଦାସୀ ହାତରେ ନୈବେଦ୍ୟ ପାଇଁ ଯେଉଁ ଅଳଙ୍କାର ପଠାଇ-ଥିଲା, ସେଥିରେ ଗୋଟିଏ "ଦଶଅବତାର ମାଳ" ଥିବା କଥା ଶାରଳାଦାସ ବିରାଟ ପର୍ବରେ ଲେଖି ଯାଇଛନ୍ତି । କିନ୍ତୁ ଓଡ଼ିଶାରେ ଯେତେବେଳେ ଅବତାରବାଦର କୌଣସି ଚିହ୍ନବର୍ଣ୍ଣ ମିଳେନାହିଁ, ସେହି ସମୟର ସାତଜଣ ରାଜା ସାତଟି ଅବତାରର ନାମ ବହନ

କଲେ କପରି ? କଥା ହେଉଛି, ଯେଉଁ ବ୍ୟକ୍ତି ଭବାନୀଚରଣ ବନ୍ଦୋପାଧ୍ୟାୟ ବା ହଣ୍ଟର୍ ସାହେବଙ୍କୁ କେଶରୀବଂଶର ତାଲିକା ଦେଲେ, ସେ "ଅଧିକନ୍ତୁ ନ ଦୋଷାୟ" ନୀତିରେ ଅଠୋଟି ଅଧିକ ନାମ ଦେବାବେଳେ ଜଗନ୍ନାଥ ମନ୍ଦିରର ସିଂହଦ୍ୱାରରେ ଥିବା ଦଶ ଅବତାରଙ୍କୁ ଗୃହିଁଦେଇ ସାତୋଟି ନାମ ତତ୍‌କ୍ଷଣାତ୍ ପାଇଗଲେ ; ଅଉ ତାହା କାଳେ ହଠାତ୍ ଧରାପଡ଼ିଯିବ, ଏଥିପାଇଁ ଦଶଅବତାରର ସ୍ୱାଭାବିକ କ୍ରମକୁ ବଦଳାଇ ଦେଇ ନୃସିଂହ, କୂର୍ମ ରାମ, ମତ୍ସ୍ୟ, ବରାହ, ବାମନ ଓ ପରଶୁ କରିଦେଲେ !

ଅନନ୍ତକେଶରୀ, ଗଙ୍ଗକେଶରୀ, ଅନଙ୍ଗକେଶରୀ, ନରସିଂହ-କେଶରୀ, ରାଜକେଶରୀ । ଏହି ପାଞ୍ଚୋଟି ନାମ ଗଙ୍ଗବଂଶୀୟ ରାଜାମାନଙ୍କ ନାମରୁହିଁ ସୃଷ୍ଟି ହୋଇଛି । ଓଡ଼ିଶାରେ ଗଙ୍ଗବଂଶର ସ୍ଥାପୟିତାଙ୍କ ନାମଥିଲା ଅନନ୍ତ ବର୍ମ୍ମଣ ଚୋଡ଼ଗଙ୍ଗ । ବର୍ମ୍ମଣ ଓ ଚୋଡ଼କୁ ବାଦ୍ ଦେଇ ଏବଂ ଅନନ୍ତ ଓ ଗଙ୍ଗ ସହିତ କେଶରୀ ଶବ୍ଦ ଯୋଗ କରି ଅନନ୍ତକେଶରୀ ଓ ଗଙ୍ଗକେଶରୀ ନାମ ଦୁଇଟି ସୃଷ୍ଟି କରାହୋଇଛି । ଗଙ୍ଗବଂଶର ସୁବିଦିତ ଅନଙ୍ଗ-ଭୀମଦେବ, ନରସିଂହଦେବ ଓ ରାଜରାଜଦେବ ନାମ-ମାନଙ୍କରୁ ଅନଙ୍ଗକେଶରୀ, ନରସିଂହ କେଶରୀ ଓ ରାଜକେଶରୀ ନାମମାନ ସୃଷ୍ଟି କରାହୋଇଛି ।

ମୁକୁନ୍ଦକେଶରୀ । ଏହି ନାମଟି ମାଦଳାପାଞ୍ଜିର କୌଣସି କପିରୁ ମିଳିନାହିଁ । କିନ୍ତୁ ସ୍ୱର୍ଗୀୟ ପୂର୍ଣ୍ଣଚନ୍ଦ୍ର ରଥ ଏହିନାମଟି ୧୯୫୮ ମସିହାର ଗୋପବନ୍ଧୁ ସ୍ମୃତି ସଂଖ୍ୟା ସମାଜରେ ପ୍ରକାଶ କରିଛନ୍ତି । ଓଡ଼ିଶାର ସ୍ୱନାମଧନ୍ୟ ଶେଷ ସ୍ୱାଧୀନ ନୃପତି

ମୁକୁନ୍ଦ ଦେବଙ୍କ ନାମରୁ ଏହି ମୁକୁନ୍ଦ କେଶରୀ ନାମଟି ସୃଷ୍ଟି ହୋଇଥିବା ଖୁବ୍ ସମ୍ଭବ ।

କୋଶଳକେଶରୀ, ଭୌମକେଶରୀ । ଛତିଶଗଡ଼ ଓ ସୋନପୁର-ସମ୍ବଲପୁର ଅଞ୍ଚଳ ପ୍ରାଚୀନ କାଳରେ ମହାକୋଶଳ ବା ଦକ୍ଷିଣ କୋଶଳ ନାମରେ ଅଭିହିତ ହେଉଥିଲା । ପ୍ରସିଦ୍ଧ ଭୌମ-ବଂଶ ପ୍ରାୟ ଦୁଇଶହ ବର୍ଷ ଓଡ଼ିଶାରେ ରାଜତ୍ୱ କରିଥିଲେ । କୋଶଳ ଓ ଭୌମ ଶବ୍ଦରେ କେଶରୀଶବ୍ଦ ଯୋଡଦେଇ ଦୁଇଟି ଅଧିକ କେଶରୀନାମ ସୃଷ୍ଟି କରି ହୋଇଛି ।

ଶିଶୁପାଳକେଶରୀ, ଶାରଙ୍ଗ କେଶରୀ, ଚଣ୍ଡକେଶରୀ । ଶିଶୁପାଳଗଡ଼ ଖନନରୁ ପ୍ରାପ୍ତ ପଦାର୍ଥମାନଙ୍କ ଦ୍ୱାରା ପ୍ରମାଣିତ ହୋଇଛି ଯେ ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ଶିଶୁପାଳଗଡ଼ ନିର୍ମିତ ହୋଇଥିଲା । ବହୁ ପ୍ରମାଣରୁ ଜଣାଯାଏ ଯେ ବାରଙ୍ଗ ଷ୍ଟେସନ ନିକଟସ୍ଥ ଶାରଙ୍ଗଗଡ଼କୁ ଗଙ୍ଗବଂଶର ସ୍ଥାପୟିତା ଅନନ୍ତ ବର୍ମଣ ଚୋଡ଼ଗଙ୍ଗଦେବ ଦ୍ୱାଦଶ ଶତାବ୍ଦୀର ପ୍ରଥମ ଭାଗରେ ନିର୍ମାଣ କରିଥିଲେ । ପୁରୀ ଜିଲାର ଟାଙ୍ଗି ନିକଟସ୍ଥ ଚଣ୍ଡେଶ୍ୱର ମନ୍ଦିରର କଳା ଓ ସ୍ଥାପତ୍ୟ ବିଚାର କଲେ ଜଣାଯାଏ ଯେ ତାହା ଗଙ୍ଗ-ରାଜତ୍ୱରେହିଁ ନିର୍ମିତ ହୋଇଥିଲା । ଅଥଚ ମାଦଳାପାଞ୍ଜିରେ ବର୍ଣ୍ଣିତଅଛି ଯେ ଶିଶୁପାଳ କେଶରୀ, ଶାରଙ୍ଗକେଶରୀ ଓ ଚଣ୍ଡକେଶରୀ ଯଥାକ୍ରମେ ଶିଶୁପାଳଗଡ଼, ଶାରଙ୍ଗଗଡ଼ ଓ ଚଣ୍ଡେଶ୍ୱର ମନ୍ଦିର ନିର୍ମାଣ କରିଥିଲେ । ଏହି ସ୍ଥାପତ୍ୟମାନ କେଶରୀ ସୋମବଂଶୀ ରାଜତ୍ୱରେ ନିର୍ମିତ ହୋଇ ନଥିଲା । ଏଣୁ ବୁଝିବାକୁ ହେବ ଯେ ଏହି ସ୍ଥାପତ୍ୟମାନଙ୍କ ନାମରୁହିଁ ତନୋଟି ଅଧିକ କେଶରୀ ନାମ ସୃଷ୍ଟି କରାଯାଇଛି ।

୮ ନରକେଶରୀ, ପଦ୍ମକେଶରୀ, ପ୍ରଚଣ୍ଡକେଶରୀ, ଚନ୍ଦ୍ରକେଶରୀ, ବୀରକେଶରୀ । ସାରଳାଦାସ ମହାଭାରତରେ ଦ୍ରୌପଦୀଙ୍କ ପଞ୍ଚ ପୁତ୍ର ମଧ୍ୟରୁ ତିନୋଟି ପୁତ୍ରଙ୍କ ନାମ ହେଉଛି ଚନ୍ଦ୍ରକେଶରୀ, ବୀରକେଶରୀ ଓ ନରକେଶରୀ (ବନ, ପୃ--୧୨୮) । ବିରାଟ ରାଜ୍ୟରେ ଭୀମ ସହିତ ଯେଉଁ ମଲ୍ଲ ଯୁଦ୍ଧ କରିଥିଲ, ତାର ପୂର୍ବପୁରୁଷ ଦୁଇଜଣଙ୍କ ନାମ ଥିଲା ପ୍ରଚଣ୍ଡକେଶରୀ ଓ ଚନ୍ଦ୍ରକେଶରୀ (ବିରାଟ, ପୃ ୧୭୨) । ଦ୍ରୌପଦୀର ସ୍ୱୟମ୍ବରକୁ ଓ ଉତ୍ତରାର ବିବାହକୁ ଯେଉଁ ରାଜାମାନେ ଆସିଥିଲେ, ସେମାନଙ୍କ ଭିତରେ ଥିଲେ ପଦ୍ମକେଶରୀ (ଆଦି, ପୃ ୨୫୭ ଓ ବିରାଟ, ପୃ ୧୭୭) ମାଦଳାପାଞ୍ଜି ଲେଖା ହେବାର ପ୍ରାୟ ଦେଢ଼ଶତ ବର୍ଷ ପୂର୍ବେ ସାରଳା ମହାଭାରତ ଲେଖା ହୋଇ-ଥିଲା । ସାରଳାଦାସ କଳ୍ପନାବଳରେ ଯେଉଁ କେଶରୀନାମମାନଙ୍କୁ ସୃଷ୍ଟି କରିଥିଲେ, ସେହି ନାମମାନଙ୍କୁ ଐତିହାସିକ ନାମରୂପେ ଗ୍ରହଣ କରାଯାଇ ମାଦଳାପାଞ୍ଜିର କେଶରୀ ରାଜା ସଂଖ୍ୟା ବୃଦ୍ଧି କରାଯାଇଛି ।

ସୂର୍ଯ୍ୟକେଶରୀ, ଲଲାଟ କେଶରୀ । ମାଦଳାପାଞ୍ଜିରେ ବର୍ଣ୍ଣିତ ଅଛି ଯେ ଯଯାତିକେଶରୀ, ସୂର୍ଯ୍ୟକେଶରୀ, ଅନନ୍ତକେଶରୀ ଓ ଲଲାଟକେଶରୀ ଏହି ଚାରିଜଣ ରାଜା ଭୁବନେଶ୍ୱରଦେବ (ଲିଙ୍ଗରାଜ)ଙ୍କ ମନ୍ଦିର ନିର୍ମାଣ କରିଥିଲେ । କିନ୍ତୁ ପାଞ୍ଜିରେ ଏହା ମଧ୍ୟ ଲେଖା ଅଛି ଯେ ମନ୍ଦିରଟି ତିନି ପାଟକରେ ଶେଷ ହୋଇଥିଲା । ଏଣୁ ଏହି ଚାରୋଟି ନାମ ମଧ୍ୟରୁ ଗୋଟିଏ କଷ୍ଟିତ ଉପନାମ ହୋଇଥିବ । ତାମ୍ରଲେଖାରୁ ପ୍ରମାଣିତ ହୁଏ ଯେ ୨ୟ ଯଯାତିଙ୍କ ପୁତ୍ରର ନାମ ଥିଲା ଉଦ୍ୟୋତକେଶରୀ ଓ ସେ ତାଙ୍କ ପିତାଙ୍କ ପରେ ସିଂହାସନ ଅରୋହଣ କରିଥିଲେ । ଉଦ୍ୟୋତକେଶରୀ ନାମଟି

ବକୃତ ହୋଇ ଅନନ୍ତକେଶରୀରେ ପରିଣତ ହୋଇଥିବା ଅତ୍ୟନ୍ତ ସମ୍ଭବ । ୨ୟ ଯଯାତି ଓ ଉଦ୍ୟୋତ କେଶରୀ ମଧ୍ୟରେ ଅନ୍ୟ କୌଣସି ରାଜା ନଥିବାରୁ ପୂର୍ବ କେଶରୀ ନାମଟି ଯଯାତିକେଶରୀ ବା ୨ୟ ଯଯାତିଙ୍କ ଉପନାମ ହୋଇଥିବା ଏକ ପ୍ରକାର ନିଶ୍ଚିତ । ଖଣ୍ଡଗିରିର ଯେଉଁ ଗୁମ୍ଫା ମଧ୍ୟରୁ ଉଦ୍ୟୋତ କେଶରୀଙ୍କ ଦୁଇଟିରେ ରାଜତ୍ୱର ଶିଳାଲେଖ ଅଛି, ତାହା ଗୋଟିଏ ଅଦ୍ୟାପି ଲଲାଟେନ୍ଦୁ କେଶରୀ ଗୁମ୍ଫା ନାମରେ ଅଭିହିତ । ଗୁମ୍ଫାଟି ଲଲାଟେନ୍ଦୁଙ୍କ ନାମାନୁସାରେ ନାମିତ ହୋଇଥିବା ଅତ୍ୟନ୍ତ ସମ୍ଭବ । ଏଣୁ ଲଲାଟ କେଶରୀ ନାମଟି ଉଦ୍ୟୋତ କେଶରୀ ବା ଅନନ୍ତ କେଶରୀଙ୍କ ଉପନାମ ଥିଲା ବୋଲି ଧରିବା ବିଧେୟ । ଏଠାରେ ଏହା ଉଲ୍ଲେଖ ଯୋଗ୍ୟ ଯେ କେଶରୀବଂଶ ତାଲିକାରେ ଦୁଇଟି ଅନନ୍ତ କେଶରୀ ନାମ ମିଳେ । ଏଥି ମଧ୍ୟରୁ ଗୋଟିଏ ଅନନ୍ତ କେଶରୀ ନାମ ଯଯାତି କେଶରୀଙ୍କ ଠିକ୍ ପରବର୍ତ୍ତୀ ରାଜାଙ୍କ ନାମ ରୂପେ ପ୍ରଦର୍ଶିତ ହୋଇଛି । ଏଣୁ ଏହି ଅନନ୍ତ କେଶରୀ ଉଦ୍ୟୋତ କେଶରୀଙ୍କ ବିକୃତ ନାମ ବୋଲି ଧରାଯାଉଛି । ଅନ୍ୟ ଅନନ୍ତ କେଶରୀ ନାମଟି ଗଙ୍ଗକେଶରୀ ନାମ ସହିତ ମିଳୁଛି । ଏଣୁ ଉଲ୍ଲିଖିତ ଆଲୋଚନାରେ ଏହା ଅନନ୍ତ ବର୍ମଣ ନାମରୁ ସୃଷ୍ଟି ହୋଇଥିବାର ଅନୁମାନ କରାଯାଇଛି ।

ଭବ କେଶରୀ, କାମକେଶରୀ, ପ୍ରଚଣ୍ଡ କେଶରୀ, ବିଜୟ କେଶରୀ, ମଧୁସୂଦନ କେଶରୀ । ଏହି ରାଜାଗୁଡ଼ିକୁ ସୃଷ୍ଟି କରିବାପରେ ସେମାନଙ୍କ ରାଜତ୍ୱ କାଳର ଘଟନା ସମ୍ବନ୍ଧରେ କଅଣ କହିବେ, ତାହା ସୃଷ୍ଟିକର୍ତ୍ତା ସ୍ଥିର କରି ନ ପାରି ସେମାନଙ୍କ ନାମର ଅର୍ଥରୁହିଁ ଘଟନା ସୃଷ୍ଟି କରିଛନ୍ତି । କବିକେଶରୀଙ୍କ ରାଜତ୍ୱରେ ଘଟିଥିବା ଘଟନାକୁ ବର୍ଣ୍ଣନା କରିବାକୁ ଯାଇ ସୃଷ୍ଟିକର୍ତ୍ତା ଲେଖିଛନ୍ତି — "ଏ

ରାଜ୍ୟ ବହୁତ ପାଠଶାଠ କଲେ ।" କାମକେଶରୀ ସମ୍ବନ୍ଧରେ ଲେଖା ଅଛି—"ଏ ରାଜା କାମରେ ଉନ୍ମତ୍ତ ହେଲେ ।" ପ୍ରଚଣ୍ଡ କେଶରୀଙ୍କ ରାଜତ୍ୱର ଘଟଣା ବର୍ଣ୍ଣଉଛି—"ଏ ରାଜା ବଡ ପ୍ରତାପୀ ହୋଇଲେ" । ବିଜୟକେଶରୀ ରାଜ୍ୟ ଜୟ କରିବାର କଥା । ଏଣୁ "ଏ ରାଜା ତେଡ ସୁ(ଶୂ)ର ଚନ୍ତ ।" ମଧୁସୂଦନ କେଶରୀଙ୍କ ନିସନ୍ତାନ କହିବା କାମ, ଏଣୁ "ଏ ରାଜା ବେତ୍ତବୃଦ୍ଧ ଆଚରଣ କଲେ । ଭଲ ଭଲ ଲୋକଙ୍କୁ ନାଶ କଲେ ।" ଏହିବା ବାହୁଲ୍ୟ ଯେ ନାମ ସହିତ ଗୁଣ ବା କର୍ମର କୌଣସି ସମ୍ବନ୍ଧ ନ ଥାଏ । ସୃଷ୍ଟି କର୍ତ୍ତା ନାମମାନଙ୍କ ସହିତ ଏପରି ସମ୍ବନ୍ଧ ଦେଖାଇଥିବାରୁ ସେଗୁଡ଼ିକ ସୃଷ୍ଟ ନାମ ବୋଲି ସହଜରେ ଧରା ପଡ଼ିଯାଉଛି ।

ନରକେଶରୀ, ବୃଦ୍ଧକେଶରୀ, ଭେଜକେଶରୀ । ନର କେଶରୀ ଅର୍ଥ ହେଉଛି ନରସିଂହ ; ଏଣୁ ଏହା ଗଙ୍ଗବଂଶୀୟ ନରସିଂହ ଦେବଙ୍କ ନାମ । ବୃଦ୍ଧ କେଶରୀ କୌଣସି ବୃଦ୍ଧରାଜାଙ୍କ ଡାକନାମ ହୋଇଥିବା ଅତ୍ୟନ୍ତ ସମ୍ଭବ । ଓଡ଼ିଶାର ମନ୍ଦିରମାନଙ୍କରେ ବହୁ ଭେଜକେଶରୀ ବା ଭେଜସିଂହ ଥିବାର ଦେଖାଯାଏ ।

ଏହିପରି ଆଲୋଚନା କଲେ ବହୁ ସୃଷ୍ଟ କେଶରୀ ରାଜାଙ୍କ ନାମ ଅପେ ଅପେ ବାଦ୍ ପଡ଼ିଯାଏ ଓ ଶେଷବେଳକୁ ପ୍ରକୃତ ଐତିହାସିକ ନାମଗୁଡ଼ିକ ତାମ୍ରଲେଖର ସୋମ ବଂଶୀ ରାଜାମାନଙ୍କ ନାମ ସହିତ ମେଳ ଖାଇଯାଏ । ତାମ୍ରଲେଖର ସୋମବଂଶ ଓ ମାଦଳା ପାଞ୍ଜିର କେଶରୀ ବଂଶ ଯେ ଏକ ଅଭିନ୍ନ ରାଜବଂଶ ଏହା ପୂର୍ବବର୍ତ୍ତୀ ଅଲୋଚନାରେ ପ୍ରଦର୍ଶିତ ହୋଇଛି । ମାଦଳାପାଞ୍ଜିର କେଶରୀ ବଂଶକୁ ଗୋଟିଏ ସ୍ୱତନ୍ତ୍ର ରାଜବଂଶ ବୋଲି ଧରିଗଲେ ଓ ସମସ୍ତ କେଶରୀ ରାଜାଙ୍କନାମକୁ ଐତିହାସିକ ବୋଲି ମାନିନେଲେ

ଗୋଟିଏ ଅମୂଳ ପରସ୍ଥିତିର ସମ୍ମୁଖୀନ ହେବାକୁ ପଡ଼େ । ମାଦଳାପାଞ୍ଜୀ ଅନୁସାରେ କେଶରୀ ରାଜାମାନଙ୍କ ସର୍ବମୋଟ ସଂଖ୍ୟା ହେଉଛନ୍ତି ୩୬ ଓ ଏମାନଙ୍କ ସର୍ବନିମ୍ନ ରାଜତ୍ୱ ସମୟ ହେଉଛି ୫୦୦ ବର୍ଷ । ଏମାନଙ୍କ ସର୍ବାଧିକ ସଂଖ୍ୟା ହେଉଛି ୭୫ ଓ ପ୍ରତ୍ୟେକ ରାଜାଙ୍କ ରାଜତ୍ୱକୁ ହାରାହାରି ୨୦ ବର୍ଷ ଲେଖାଏଁ ଧରାଗଲେ ଏମାନଙ୍କ ସର୍ବାଧିକ ରାଜତ୍ୱ ସମୟ ହେଉଛି ୧୫୦୦ ବର୍ଷ । ମାଦଳାପାଞ୍ଜୀ ଅନୁସାରେ କେଶରୀମାନେ ଏହି ଦୀର୍ଘ ସମୟ ଧରି ଓଡ଼ିଶାରେ ରାଜତ୍ୱ କରିଥିଲେ । ଓଡ଼ିଶାର ସମସ୍ତ କୀର୍ତ୍ତିକଳାପ ଓ ଯାଗଯଜ୍ଞ କରିଥିଲେ । ପାଞ୍ଜି ଅନୁସାରେ କେଶରୀମାନେ ପଞ୍ଚମ ଶତାବ୍ଦୀରୁ ରାଜତ୍ୱ ଆରମ୍ଭ କରିଥିଲେ । ଏହି କଥାକୁ ଯଦି ଐତିହାସିକ ସତ୍ୟ ବୋଲି ଧରାଯାଏ, ତାହାହେଲେ ସ୍ୱୀକାର କରିବାକୁ ହେବ ଯେ କେଶରୀ ରାଜତ୍ୱ ବର୍ତ୍ତମାନ ସୁଦ୍ଧା ଚାଲିଛି ଏବଂ ଗଙ୍ଗ, ସୂର୍ଯ୍ୟ, ଭୋଇ, ପଠାଣ, ମୋଗଲ, ମରହଟ୍ଟା ଓ ଇଂରାଜମାନେ ଏ ଦେଶରେ ରାଜତ୍ୱ କରି ନଥିଲେ । କେଶରୀ-ବଂଶ ଯଦି ଗୋଟିଏ ସ୍ୱତନ୍ତ୍ର ବଂଶ, ତାହାହେଲେ କ୍ଷୁଦ୍ର କ୍ଷୁଦ୍ର ରାଜବଂଶର ତାମ୍ର ଓ ଶିଳାଲେଖ ପ୍ରଚୁର ମିଳୁଥିବା ସ୍ଥଳେ କେଶରୀମାନଙ୍କ ଦୀର୍ଘରାଜତ୍ୱର ଗୋଟିଏ ସୁଦ୍ଧା ତାମ୍ର ଓ ଶିଳାଲେଖ ନ ମିଳିବା ଏକାବେଳକେ ଅସମ୍ଭବ କଥା ।

ଏହି ସବୁ କାରଣରୁ ମାଦଳାପାଞ୍ଜିର କେଶରୀବଂଶ ଓ ତାମ୍ର ଶିଳାଲେଖର ସୋମବଂଶକୁ ଏକ ଓ ଅଭିନ୍ନ ରାଜବଂଶ ବୋଲି ଧରିବାକୁ ହେବ । ତାଛଡ଼ା ମାଦଳାପାଞ୍ଜିର ଯେଉଁ ଅଂଶ ଅନ୍ୟାନ୍ୟ ଉପାଦାନରୁ ପ୍ରାପ୍ତ ଇତିହାସ ସହିତ ମେଳ ଖାଇଯାଏ, କେବଳ ସେହି ଅଂଶକୁ ଗ୍ରହଣ କରି ବାକି ଅଂଶକୁ ବାଦ୍

ଲଣ୍ଡଦେବାକୁ ହେବ । ନଚେତ୍ ମାଦଳାପାଞ୍ଜୀ ଓଡ଼ିଶା ଇତିହାସ ସଙ୍କଳନରେ ଅସୀମ ଅନ୍ତରାୟ ସୃଷ୍ଟି କରିବ । ଇତିହାସ ନାମରେ ମିଥ୍ୟା ଓ ଅଳୀକତାକୁ ପ୍ରଶ୍ରୟ ଦେଲେ ଐତିହାସିକ ଉପାଦାନରେ କଳାଙ୍କଳାର ବନ୍ଦ କରିହେବ ନାହିଁ । ଫଳରେ ଆମର ଅତୀତ ଇତିହାସ ଅମ୍ଭମାନଙ୍କୁ ଆଲୋକ ନ ଦେଇ ଅନ୍ଧକାରକୁ ଟାଣିନେବ ।

—ଃ✱ଃ—

# ଚୋଡ଼ଗଙ୍ଗ ଓ ଗଙ୍ଗେଶ୍ୱର

ଗଙ୍ଗବଂଶୀୟ ରାଜାମାନେ ଓଡ଼ିଶାରେ ୩୨୬ ବର୍ଷ ରାଜତ୍ୱ କରିଥିଲେ । ଏହି ଦୀର୍ଘ ସମୟ ମଧ୍ୟରେ ସେମାନେ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ସମଗ୍ର ଭୂଖଣ୍ଡକୁ ଅଧିକାର କରି ଓଡ଼ିଶାକୁ ଗୋଟିଏ ଶକ୍ତିଶାଳୀ ସ୍ୱାଧୀନ ରାଜ୍ୟରେ ପରିଣତ କରିଥିଲେ । ଏହି ବଂଶର ଅନଙ୍ଗଭୀମଦେବ ଓ ଲାଙ୍ଗୁଲା ନରସିଂହଦେବ ପ୍ରଭୃତି ନରପତିମାନେ ବଙ୍ଗଦେଶୀୟ ମୁସଲମାନମାନଙ୍କ ଆକ୍ରମଣ ବାରମ୍ବାର ବ୍ୟାହତ କରି ଓ ସେମାନଙ୍କୁ ପରାସ୍ତ କରି ବଙ୍ଗଦେଶର ପଶ୍ଚିମାଞ୍ଚଳ ଦଖଲ କରି ବସିଥିଲେ । ଏହି ବଂଶର ରାଜତ୍ୱଠାରୁ ଭାରତର ଧର୍ମ ରାଜ୍ୟରେ ଓଡ଼ିଶାର ଜଗନ୍ନାଥଙ୍କ ପ୍ରଭାବ ଅପ୍ରତିହତ ଓ ଅପ୍ରତିଦ୍ୱନ୍ଦୀ ହୋଇ ଉଠିଥିଲା ଓ ଶିଳ୍ପରାଜ୍ୟରେ ଜଗନ୍ନାଥ ଓ କୋଣାର୍କଭଳି ଅପରୂପ ଓ ଅପ୍ରତିଦ୍ୱନ୍ଦୀ ମନ୍ଦିରମାନ ମୁଣ୍ଡଟେକି ଉଠିଥିଲା । ବସ୍ତୁତଃ ଗଙ୍ଗରାଜତ୍ୱ ଓଡ଼ିଆର ଶୌର୍ଯ୍ୟ, ବୀର୍ଯ୍ୟ, ଧନ, ମାନ, ଜ୍ଞାନ-ବିଜ୍ଞାନ ଓ କଳାକଉଶଳର ଚରମ ବିକାଶ କରି ଉତ୍କଳରେ ଗୋଟିଏ ସ୍ୱର୍ଣ୍ଣଯୁଗର ସୃଷ୍ଟି କରିଥିଲା । କିନ୍ତୁ ଯେଉଁ ବୀରପୁରୁଷ ସୁଦୀର୍ଘ ୭୦ ବର୍ଷ ରାଜତ୍ୱ କରି ଏହି ପ୍ରଥିତଯଶା ରାଜବଂଶକୁ ସୁଦୃଢ଼ ଭିତ୍ତି ଉପରେ ସଂସ୍ଥାପନ କରିଗଲେ, ସେହି ବୀରପୁରୁଷଙ୍କୁ ଓଡ଼ିଆର କୁତ୍ସିତ କିମ୍ବଦନ୍ତୀ କିମ୍ଭୂତ କାମାଚାର ରୂପେ ବର୍ଣ୍ଣନା କରୁଛି । କିମ୍ବଦନ୍ତୀ କହେ ଯେ ଗଙ୍ଗବଂଶର ସ୍ଥାପୟିତା ଚୋଡ଼ଗଙ୍ଗ ରାଣୀପ୍ରିୟ ଥିଲେ, ନୀତିଭ୍ରଷ୍ଟ ନୀତିହୀନ କାମୁକ ଥିଲେ ଓ ନେତାଇ ଧୋବଣୀର ସିଦ୍ଧମନ୍ତ୍ର ବଳରେ

ଉତ୍କଳକୁ ଅଧିକାର କରିଥିଲେ । ଦୀର୍ଘକାଳ ପୂର୍ବେ ପ୍ରଚଳିତ ବା ଲିଖିତ କମ୍ବଦନ୍ତୀ ଛଡ଼ା ଆଧୁନିକ ଯୁଗର କାବ୍ୟକବିତା ମଧ୍ୟ ତାଙ୍କ ପ୍ରତି କମ୍ ଅନ୍ୟାୟ କରିନାହିଁ । ଉତ୍କଳ ସାହିତ୍ୟରେ ନବଯୁଗର ସ୍ରଷ୍ଟା କବିବର ରାଧାନାଥ ଭ୍ରାନ୍ତ କମ୍ବଦନ୍ତୀ ଅନୁସରଣ କରି କେତେବେଳେ ତାଙ୍କୁ ପରମ ଜିତେନ୍ଦ୍ରିୟ ଓ କେତେବେଳେ ତାଙ୍କୁ ପରମକାମୁକରୂପେ ବର୍ଣ୍ଣନା କରିଛନ୍ତି । କବିବର ନନ୍ଦିକେଶ୍ୱରୀ କାବ୍ୟରେ ତାଙ୍କୁ ଚୋଡ଼ଗଙ୍ଗ ନାମରେ କ୍ଷାତ୍ରଶକ୍ତିର ଜୀବନ୍ତ ମୂର୍ତ୍ତିରୂପେ ଉପସ୍ଥାପନ କରି ତାଙ୍କର ନିଷ୍ଠୁର ନୀତିବାଦ ଦ୍ୱାରା କୋମଳମନା, ପ୍ରେମପ୍ରାର୍ଥିନୀ, କେଶରୀ ରାଜନନ୍ଦିନୀ ନନ୍ଦିକାର ପ୍ରାଣବାୟୁ ଉଡ଼ାଇ ଦେଇଛନ୍ତି ; ଆଉ ପାର୍ବତୀ କାବ୍ୟରେ ତାଙ୍କୁ ଗଙ୍ଗେଶ୍ୱର ନାମରେ କୁତ୍ସିତ କାମୁକରୂପେ ବର୍ଣ୍ଣନା କରି ରାଣୀ ପାର୍ବତୀଙ୍କ ଦ୍ୱାରା ତାଙ୍କର ଶିରଚ୍ଛେଦର ବ୍ୟବସ୍ଥା କରିଛନ୍ତି । ଏହି ବିରାଟ ଭ୍ରମର ମୂଳ ଉତ୍ସ କେଉଁଠାରେ ଅଛି, ତାହା ଏଠାରେ ଖୋଜି ବାହାର କରିବାପାଇଁ ଚେଷ୍ଟା କରାଯିବ । ତା ଛଡ଼ା ମାଦଳାପାଞ୍ଜୀ, ଗଞ୍ଜାମରୁ ପ୍ରାପ୍ତ ଆଉ ଏକ ପାଞ୍ଜୀ, ଗଙ୍ଗେଶ୍ୱର ଇତିହାସ ଓ ଶାରଳାଦାସ ମହାଭାରତ ପ୍ରଭୃତିରେ ଥିବା ଚୋଡ଼ଗଙ୍ଗଙ୍କ ସମ୍ବନ୍ଧୀୟ କମ୍ବଦନ୍ତୀମାନଙ୍କର ସମ୍ୟକ୍ ଆଲୋଚନା କରାଯିବ ।

ଗଙ୍ଗବଂଶର ପ୍ରତିଷ୍ଠାତା ଅନନ୍ତବର୍ମଣ ଚୋଡ଼ଗଙ୍ଗଙ୍କ ୬ଟି ତାମ୍ରଶାସନ ବ୍ୟତୀତ ଭୁବନେଶ୍ୱର, ସତ୍ୟବାଦୀ ପୁରୀ, ଅଳକବରମ୍, ନାରାୟଣପୁରମ୍, ସୀମାଚଳମ୍ ଓ ଦ୍ରାକ୍ଷାରାମ ପ୍ରଭୃତିରେ ତାଙ୍କର ଅନେକଗୁଡ଼ିଏ ଶିଳାଲେଖ ଆବିଷ୍କୃତ ହୋଇଛି ଏହି ତାମ୍ର ଓ ଶିଳାଲେଖଗୁଡ଼ିକ ମଧ୍ୟରୁ ଅଧିକାଂଶ ପ୍ରକାଶିତ ହୋଇଛି ଓ ସେଗୁଡ଼ିକର ଅନୁଶୀଳିତ ତଥ୍ୟ ଐତିହାସିକମାନଙ୍କ-

ଦ୍ୱାରା ଅନେକଗତ ହୋଇଛି । ସେଗୁଡ଼ିକର ଆଲୋଚନା ଏଠାରେ ଅନାବଶ୍ୟକ । କିନ୍ତୁ ଏମାନଙ୍କ ସାହାଯ୍ୟରେ କିମ୍ବଦନ୍ତୀମାନଙ୍କ ଭ୍ରମଜାଲ ଭେଦକଲେ ସେ ଗୁଡ଼ିକର ଅନ୍ତର୍ନିହିତ ସତ୍ୟ ତାମ୍ର ଶିଳାଲେଖରୁ ପ୍ରାପ୍ତ ଐତିହାସିକ ସତ୍ୟ ସହିତ କିପରି ଶତକ ଭାବରେ ମେଳ ଖାଇଥାଏ, ତାହାହିଁ ଏଠାରେ ପ୍ରଦର୍ଶିତ ହେବ ।

ମାଦଳାପାଞ୍ଜିରେ ବର୍ଣ୍ଣିତ ଅଛି ଯେ, ଶେଷ କେଶରୀ ରାଜାଙ୍କ ସଙ୍ଗେ ତାଙ୍କ ଅମାତ୍ୟ ବାସୁଦେବରଥ ବା ବାସୁଦେବ ବାହିନୀ-ପତିଙ୍କ କଳହ ହେବାରୁ ରଥେ ଭୁବନେଶ୍ୱର ମହାଦେବଙ୍କ ସେବା କରି କେଶରୀ ବଂଶର ଧ୍ୱଂସ କାମନା କଲେ । ମାଦଳାପାଞ୍ଜିର ରଚନାକାଳ ନିର୍ଣ୍ଣୟ ବଳାବେଳେ ଏହି କିମ୍ବଦନ୍ତୀର ଶରଦ୍-ବିବରଣ ଆଗରୁ କୁହାଯାଇଛି । ଏହି କିମ୍ବଦନ୍ତୀରେ ଚୈରଗଙ୍ଗ ବା ଚୈଡ଼ଗଙ୍ଗଙ୍କୁ ଜଣେ 'ଗଣ୍ଡୀ'ର ଅପ୍ରାପ୍ତ ବୟସ୍କ ବାଳକରୂପେ ଉପସ୍ଥାପନ କରାଯାଇଛି ଓ ସେ ବାସୁଦେବ ବାହିନୀପତିଙ୍କ ଅଧୀନ-କ୍ରମେ କେତାଇ ଧୋବାଣୀ ଠାରୁ ସିଦ୍ଧମନ୍ତ୍ର ହାସଲକରି "ନାଟବେଳରେ" ଆସି କଟକ ଅଧିକାର କରିଥିବା କଥା ଉଲ୍ଲେଖ ରହିଛି । କିନ୍ତୁ ମାଦଳା ପାଞ୍ଜିରେ ଚୈଡ଼ଗଙ୍ଗଙ୍କୁ ଥରେମାତ୍ର "ଗୋକର୍ଣ୍ଣେଶ୍ୱରର ବାର୍ଯ୍ୟ ଗଙ୍ଗାଦେବୀ ଗର୍ଭ ସମ୍ଭୂତ" ବୋଲି ମଧ୍ୟ କୁହାଯାଇଛି । ଲିଙ୍ଗଳେଶ୍ୱର ଇତିହାସରେ ବର୍ଣ୍ଣିତ ଅଛି ଯେ ବାସୁଦେବ ନାମକ ଜଣେ ବ୍ରାହ୍ମଣ କଳିଙ୍ଗ ଦେଶର କୋଳାହଳ ନଗରୀଠାରୁ ଲିଙ୍ଗଳେଶ୍ୱର ମହାଦେବଙ୍କ ପ୍ରସାଦରୁ ବାସୁଦେବ ଓ ଚୈଡ଼ଗଙ୍ଗ ନାମକ ଦୁଇଗୋଟି ପୁତ୍ର ଲାଭ କରିଥିଲେ । ଏମାନଙ୍କ

ମଧ୍ୟରୁ ଗ୍ରେଡ଼ଗଙ୍ଗ ବାରବାଟି ଧ୍ୱଂସ କରି ଓ ନୃସିଂହ କେଶରୀଙ୍କୁ ଧରାସ୍ତ କରି ଓଡ଼ିଶା ଦଖଲ କରିଥିଲେ(୧) ।

ଏହି କମ୍ବଦନ୍ତୀମାନଙ୍କରେ ଥିବା ବାସୁଦେବ, ଗ୍ରେଡ଼ଗଙ୍ଗ, ଗୋକର୍ଣ୍ଣେଶ୍ୱର, ଗଙ୍ଗା ଓ କୋଳାହଳ ନଗରୀ ନାମମାନଙ୍କ ମଧ୍ୟରୁ ପ୍ରତ୍ୟେକଟି ପ୍ରକୃତ ପକ୍ଷରେ ଐତିହାସିକ ନାମ ; କିନ୍ତୁ ସେମାନଙ୍କ ସମ୍ବନ୍ଧ ଓଲଟ ପାଲଟ କରି ଦିଆଯାଇଛି । ବହୁ ତାମ୍ରଶାସନରୁ ପ୍ରମାଣିତ ହୁଏ ଯେ ଗ୍ରେଡ଼ଗଙ୍ଗଙ୍କ ପିତାଙ୍କର ନାମ ଥିଲା ଦେବେନ୍ଦ୍ର ବର୍ମଣ ରାଜରାଜ, ମାତାଙ୍କ ନାମଥିଲା ରାଜସୁନ୍ଦରୀ, ତାଙ୍କ ବଂଶର ନାମ ଥିଲା ଗଙ୍ଗବଂଶ ଓ ଏହି ବଂଶର ଆରାଧ୍ୟ ଦେବତା ଥିଲେ ମହେନ୍ଦ୍ର ପର୍ବତରେ ଅବସ୍ଥିତ ଗୋକର୍ଣ୍ଣେଶ୍ୱର । କିନ୍ତୁ ଅତୀତ ଘଟନାମାନଙ୍କ ଅସ୍ପଷ୍ଟ ସ୍ମୃତିରୁ ଜାତ କମ୍ବଦନ୍ତୀ ତାଙ୍କ ବଂଶର ନାମକୁ ତାଙ୍କର ମାତାଙ୍କ ନାମ ଓ ତାଙ୍କ କୁଳଦେବତାଙ୍କ ନାମକୁ ତାଙ୍କ ପିତାଙ୍କ ନାମ ବୋଲି ଧରିନେଲା । ଗଙ୍ଗାଙ୍କୁ ଗ୍ରେଡ଼ଗଙ୍ଗଙ୍କ ମାତାରୂପେ ଧରିନେବାପରେ ତାଙ୍କୁ ସ୍ତ୍ରୀ ବୋଲି କହିବାରେ ଅସମୀଚୀନତା ରହିଲା ନାହିଁ ; କାରଣ ପୁରାଣ ପ୍ରସିଦ୍ଧା ଗଙ୍ଗା କେତେବେଳେ ଶିବ ଓ କେତେବେଳେ ଶାନ୍ତନୁଙ୍କ ପ୍ରେୟସୀ ହୋଇ ଗଙ୍ଗା ବୋଇଲେ ରହୁଥିଲେ ଓ ଗାଙ୍ଗୀ ବୋଇଲେ ଛାଡ଼ି ପଳାଉଥିଲେ ।

ପ୍ରାଚୀନ କାଳରେ ଜନସାଧାରଣଙ୍କ ଅତିଲୌକିକ ଶକ୍ତି ଓ କୁହୁକ ମନ୍ତ୍ର ଉପରେ ଜୀବନ୍ତ ବିଶ୍ୱାସ ଥିଲା । ଯାହାର ପିତା

(୧) P. Mukhorji—The History of Medieval Vaisnavism in Orissa, pp. 179—80.

ସ୍ୱୟଂ ଗୋକର୍ଣ୍ଣେଶ୍ୱର ଓ ପାହାର ମାତା ସ୍ୱୟଂ ଗଙ୍ଗାଦେବୀ ଯେ ଯେ କୁହୁକମନ୍ତ୍ର ବଳରେ ବଳୀୟାର ତାଙ୍କୁ କେଶରୀରାଜା ପରାସ୍ତ କରନ୍ତେ କପରି ? ଏହି ବିଶ୍ୱାସ ଉପରେହିଁ କିମ୍ବଦନ୍ତୀର ମୂଳଭିତ୍ତି ସ୍ଥାପିତ ହୋଇଛି। କିନ୍ତୁ ପ୍ରକୃତ ଐତିହାସିକ ଘଟନାର ରୂପ ସମ୍ପୂର୍ଣ୍ଣ ଭିନ୍ନ ପ୍ରକାର ହୋଇଥିବ। ଯୁଗେ ଯୁଗେ ବିଶ୍ୱାସଘାତକମାନଙ୍କଦ୍ୱାରା ରାଜ୍ୟ ଓ ରାଜବଂଶର ପତନ ଘଟିଛି। କେଶରୀ ରାଜାଙ୍କ ବିଶ୍ୱାସଘାତକ ଅମାତ୍ୟ ବାସୁଦେବ 'ବାହିନୀପତି' ବା ସେନାପତି ଥିଲେ। ଏଣୁ ଚୋଡ଼ଗଙ୍ଗ ସୈନ୍ୟ ସାମନ୍ତ ନ ଆଣି "ନାଟବେଶରେ" ବା ଛଦ୍ମବେଶରେ ଆସି କଟକ ମାଡ଼ିବସି ରାଜା ହୋଇଥିଲେ। ବିଶ୍ୱାସଘାତକ ସେନାପତିଙ୍କ ଅଧୀନରେ ଥିବା ସୈନ୍ୟସାମନ୍ତ ନିଶ୍ଚେଷ୍ଟ ହୋଇ ରହିଥିବେ ଓ ଏହି ହେତୁରୁ ମୁଷ୍ଟିମେୟ ଛଦ୍ମବେଶୀ ବିଦେଶୀୟମାନଙ୍କଦ୍ୱାରା କେଶରୀ ରାଜାଙ୍କ ରାଜଧାନୀ ଅଧିକୃତ ହୋଇଥିବ। ମୁଷ୍ଟିମେୟ ସୈନ୍ୟ ଛଦ୍ମବେଶରେ ଆସି ରାଜାମାନଙ୍କ ରାଜଧାନୀ ଅଧିକାର କରିଥିବାର ଉଦାହରଣ ଇତିହାସରେ ବିରଳ ନୁହେ। ବଖ୍ତିଅର୍ ଖିଲ୍‌ଜି ମୁଷ୍ଟିମେୟ ଛଦ୍ମବେଶୀ ଅଶ୍ୱାରୋହୀଙ୍କ ଦ୍ୱାରା ବଙ୍ଗଦେଶ ଅଧିକାର କରିଥିବାର ଓ ହୋସାଙ୍ଗଶାହ ଘୋଟକ ବ୍ୟବସାୟୀ ବେଶରେ ଓଡ଼ିଶା ଆକ୍ରମଣ କରିଥିବାର ଐତିହାସିକ ପ୍ରମାଣମାନ ରହିଛି। କେଶରୀ ରାଜାଙ୍କୁ ପଦଚ୍ୟୁତ କଲାପରେ ବାସୁଦେବ ବାହିନୀପତି ଓ ଚୋଡ଼ଗଙ୍ଗ ବିକ୍ଷୁବ୍ଧ ଜନମତକୁ ଶାନ୍ତ କରିବାପାଇଁ ଭିନ୍ନପ୍ରକାର ପ୍ରଚାର ଚଳାଇବା ଲାଗି ବାଧ୍ୟ ହୋଇଥିବେ। ଏହି ପ୍ରଚାରରେ ଭୁବନେଶ୍ୱରଦେବଙ୍କ ଆଜ୍ଞା, ଚୋଡ଼ଗଙ୍ଗଦେବଙ୍କ କୁହୁକବଳ ଓ ତାଙ୍କ ପିତାମାତାଙ୍କ ଅତିମାନୁଷିକତା ଇତ୍ୟାଦି ନିୟୋଜିତ ହୋଇଥିବା ଅତ୍ୟନ୍ତ ସମ୍ଭବ। ଯେଉଁମାନଙ୍କ

ସିଂହାସନ ପାଇବାର କୌଣସି ଦାବୀ ନଥାଏ, ଅଥଚ ନିଜ ବାହୁ-ବଳରେ ଅପରର ସିଂହାସନ ଅଧିକାର କରନ୍ତି, ସେମାନେ ଦେବା-ଦେଶରେ ତାହା କଲେ ବୋଲି ପ୍ରଚାର ଚଳାଇବାକୁ ବାଧ୍ୟ ହୁଅନ୍ତି । ଗଙ୍ଗବଂଶରେ ଶେଷ ରାଜା ୪ର୍ଥ ଭାନୁଦେବଙ୍କୁ ସିଂହାସନ ଚ୍ୟୁତ କରି କପିଳେନ୍ଦ୍ର ଦେବ ଓ ଜ୍ୟେଷ୍ଠଭ୍ରାତା ହମ୍ବିର ଦେବଙ୍କୁ ନ୍ୟାଯ୍ୟ ଦାବୀରୁ ବଞ୍ଚିତ କରି ପୁରୁଷୋତ୍ତମଦେବ ଜଗନ୍ନାଥଙ୍କ ଆଦେଶରେ ଓଡ଼ିଶାରେ ରାଜା ହେଲେ ବୋଲି ଯେଉଁ ପ୍ରଚାର ଚଳାଇଥିଲେ, ତାର ପ୍ରମାଣ ମାଦଳାପାଞ୍ଜିରେ ଓ ଅନ୍ୟ ପ୍ରାଚୀନ ଲେଖମାନଙ୍କରେ ମଧ୍ୟ ରହିଛି । ପ୍ରଚାରହିଁ କିମ୍ବଦନ୍ତୀର ମୂଳପିଣ୍ଡ ହୋଇଥାଏ । ଏଣୁ ପ୍ରକୃତ ଐତିହାସିକ ଘଟଣା ସହିତ ତାର ଅମେଳ ରହିବା ଅତ୍ୟନ୍ତ ସ୍ୱାଭାବିକ ।

କଙ୍ଗଳେଶ୍ୱର ଇତିହାସରେ ଯେଉଁ କୋଳାହଳ ନଗରୀ କଥାର ଉଲ୍ଲେଖ ଅଛି, ତାହା କାଳ୍ପନିକ ନୁହେଁ । ଗ୍ରେଙ୍ଗମାନଙ୍କ କୋଣ୍ଡି ତାମ୍ର ଶାସନରେ ବର୍ଣ୍ଣିତ ଅଛି ଯେ ତାଙ୍କର ଜଣେ ପୂର୍ବପୁରୁଷ କୋଳାହଳପୁର ସ୍ଥାପନ କରିଥିଲେ । ସ୍ୱର୍ଗୀୟ ଫିଲିଫ୍ସାହେବ ଏହି କୋଳାହଳପୁରକୁ ମହୀଶୂରର କୁବଲାଳପୁର ବୋଲି ସ୍ଥିର କରିଥିଲେ । କିନ୍ତୁ ଅଧ୍ୟାପକ ସୁବ୍‌ବାରାଓ ଗଞ୍ଜାମରୁ ପ୍ରାପ୍ତ ଗଙ୍ଗ-ବଂଶୀୟ ପୃଥିବୀ ବର୍ମାଙ୍କ ତାମ୍ର ଶାସନରେ ଏହି କୋଳାହଳପୁରର ଉଲ୍ଲେଖ ଥିବାର ପ୍ରମାଣ ଦର୍ଶାଇ, ଏହା ଗଞ୍ଜାମ ଜିଲ୍ଲାରେ ଅବସ୍ଥିତ ଥିଲା ବୋଲି ସ୍ଥିର କରିଛନ୍ତି । ପ୍ରମାଣ ଉପରେ ପ୍ରତିଷ୍ଠିତ ଅଧ୍ୟାପକ ସୁବ୍‌ବାରାଓଙ୍କ ସିଦ୍ଧାନ୍ତହିଁ ଗ୍ରହଣୀୟ ।

ବର୍ତ୍ତମାନ ପ୍ରଶ୍ନ ହେଉଛି—ଯେଉଁ କେଶରୀ ରାଜାଙ୍କୁ ପରାସ୍ତ କରି ଗ୍ରେଙ୍ଗମାନେ ଉତ୍କଳ ଅଧିକାର କରିଥିଲେ, ତାଙ୍କ ନାମ କଅଣ

ଥିଲ ? ୧୮୨୨ ଖ୍ରୀଷ୍ଟାବ୍ଦରେ ଷ୍ଟାର୍ଲିଂ ସାହେବ ଯେଉଁ ମାଦଳାପାଞ୍ଜୀ ସାହାଯ୍ୟରେ ତାଙ୍କ ଓଡ଼ିଶା ଇତିହାସ ଲେଖିଥିଲେ, ସେହି ପାଞ୍ଜିରେ ଏହି ଶେଷ କେଶରୀଙ୍କ ନାମ ଥିଲା ସୁବର୍ଣ୍ଣ କେଶରୀ । ଏହାଙ୍କ ପରବର୍ତ୍ତୀ ସ୍ୱର୍ଗୀୟ ଭବାନୀଚରଣ ବନ୍ଦ୍ୟୋପାଧ୍ୟାୟ, ହଣ୍ଟର, ପ୍ୟାରୀମୋହନ ଆଚାର୍ଯ୍ୟ ଓ ରାଧାନାଥ ରାୟ ପ୍ରଭୃତି ଐତିହାସିକ ଓ ଲେଖକମାନଙ୍କ ଗ୍ରନ୍ଥରେ ଏହି ସୁବର୍ଣ୍ଣକେଶରୀ ନାମଟିହିଁ ଦେଖାଯାଏ । କିନ୍ତୁ ୧୯୦୦ ମସିହାରେ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ତିନୋଟି ପୋଥି ସାହାଯ୍ୟରେ ଯେଉଁ ମାଦଳାପାଞ୍ଜୀ ପୁସ୍ତକ ପ୍ରକାଶ କରିଛନ୍ତି ସେଥିରେ ଶେଷ କେଶରୀ ରାଜାଙ୍କ ନାମ ହେଉଛି ଶୂନ୍ୟକେଶରୀ ଓରଫ ସିଦ୍ଧକାଳ କେଶରୀ । ମାଦଳା-ପାଞ୍ଜୀରେ ବିଭିନ୍ନ ସମୟର ଓ ବିଭିନ୍ନ ହାତର ଲେଖା ପୋଥି-ମାନଙ୍କରେ ରାଜାମାନଙ୍କ ନାମମାନ ବିକୃତ ହୋଇ ବିଭିନ୍ନ ଆକାର ଧାରଣ କରିଛି; ଯଥା :—ହଣ୍ଟରଙ୍କ ପୋଥିର ସେବକଦେବ ମହାନ୍ତିଙ୍କ ପୋଥିର ସଶୋକ ଦେବରେ, ଷ୍ଟାର୍ଲିଂଙ୍କ ପୋଥିର ସରଙ୍ଗଦେବ ହଣ୍ଟରଙ୍କ ପୋଥିର ନରସିଂହଦେବରେ, ଷ୍ଟାର୍ଲିଂଙ୍କ ପୋଥିର ମର୍କଟକେଶରୀ ହଣ୍ଟରଙ୍କ ଓ ମହାନ୍ତିଙ୍କ ପୋଥିମାନଙ୍କରେ ଯଥାକ୍ରମେ ମକର ଓ ମର୍କତ କେଶରୀରେ ପରିଣତ ହୋଇଛନ୍ତି । ଏହିପରି ଆହୁରି ଅନେକ ଉଦାହରଣ ଦିଆଯାଇପାରେ । ଏଣୁ ସୁବର୍ଣ୍ଣ ବା ସ୍ୱର୍ଣ୍ଣକେଶରୀ ନାମଟି ଯେ ଶେଷବେଳକୁ ଶୂନ୍ୟ-କେଶରୀରେ ପରିଣତ ହୋଇଛି, ଏପରି ଅନୁମାନ ଅସଙ୍ଗତ ନୁହେଁ ।

ଚୋଡ଼ଗଙ୍ଗ ଯେଉଁ କେଶରୀ ରାଜାଙ୍କୁ ପରାସ୍ତ କରି ଓଡ଼ିଶା ଦଖଲ କଲେ, ତାଙ୍କ ନାମ ତାମ୍ରଶାସନମାନଙ୍କରୁ ମିଳେ ନାହିଁ;

କିନ୍ତୁ ଚୋଡ଼ଗଙ୍ଗଙ୍କ କୋର୍ଣ୍ଣି ତାମ୍ରଶାସନରେ ବର୍ଣ୍ଣିତ ଅଛି ଯେ ସେ ପତିତ ଉତ୍କଳ ନୃପତିଙ୍କୁ ପୁନଃ ସଂସ୍ଥାପନ କରିଥିଲେ । ଅଧିକନ୍ତ ମଧ୍ୟ ଦୀର୍ଘାଶୀ ନାମକ ସ୍ଥାନରୁ ପ୍ରାପ୍ତ ଗୋଟିଏ ଦୀର୍ଘ ଶିଳାଲେଖରେ ବର୍ଣ୍ଣିତ ଅଛି ଯେ ଚୋଡଗଙ୍ଗଙ୍କ ପିତା ଦେବେନ୍ଦ୍ର ବର୍ମଣ ରାଜରାଜଙ୍କ ସେନାପତି **ବନପତି** ଉତ୍କଳର ରାଜାଙ୍କୁ ପରାସ୍ତ କରିଥିଲେ । ସନ୍ଧ୍ୟାକର ନନ୍ଦୀଙ୍କ ଦ୍ୱାରା ରଚିତ ରାମଚରିତ ନାମକ ସଂସ୍କୃତ-ଗ୍ରନ୍ଥ ଓ ତାର ଟୀକାରେ ବର୍ଣ୍ଣିତ ଅଛି ଯେ ବଙ୍ଗର ରାଜା ରାମପାଳ ଦେବଙ୍କ ସେନାପତି ବା କରଦ ରାଜା ଜୟସିଂହ ଉତ୍କଳର ପତିତ ସୋମବଂଶୀ ରାଜା କର୍ଣ୍ଣ କେଶରୀଙ୍କୁ ସାହାଯ୍ୟ ଦେଇ ଅନୁଗ୍ରହ କରିଥିଲେ । ଏହି ସବୁ ଲେଖାରୁ କେଶରୀ ବା ସୋମବଂଶର ପତନ କାଳୀନ ଘଟନାବଳୀର ମୋଟାମୋଟି ଧାରଣା କରାଯାଇ ପାରେ । ପ୍ରକୃତିର ସ୍ୱାଭାବିକ ନିୟମାନୁସାରେ ଏହି ବଂଶ ଦୁର୍ବଳ ହୋଇ ପଡ଼ିବାବେଳେ ଉତ୍ତର ଓ ଦକ୍ଷିଣରୁ ପ୍ରବଳ ରାଜାମାନେ ଉତ୍କଳକୁ ଅଧିକାର କରିବା ପାଇଁ ଚେଷ୍ଟା କରିଥିଲେ । କିନ୍ତୁ ଦକ୍ଷିଣର ପ୍ରବଳ ପ୍ରତାପୀ ରାଜା ଚୋଡ଼ଗଙ୍ଗ ଶେଷରେ ବିଜୟୀ ହୋଇ ଉତ୍କଳ ରାଜ୍ୟ ଅଧିକାର କଲେ ।

ଚୋଡଗଙ୍ଗଙ୍କ ପିତା ଦେବେନ୍ଦ୍ର ବର୍ମଣ ରାଜତ୍ୱ ୧୦୬୯ ଖ୍ରୀ: ରୁ ୧୦୭୨ ଖ୍ରୀ: ଓ ସ୍ୱୟଂ ଚୋଡ଼ଗଙ୍ଗ ୧୦୭୬ରୁ ଖ୍ରୀ: ରୁ ୧୧୪୭ ଖ୍ରୀ: ପର୍ଯ୍ୟନ୍ତ ରାଜତ୍ୱ କରିଥିବା ନିର୍ଦ୍ଦିଷ୍ଟ ଭାବରେ ଜଣାଯାଇଛି ; କିନ୍ତୁ ବଙ୍ଗର ରାଜା ରାମପାଳଙ୍କ ରାଜତ୍ୱ କେବେ ଆରମ୍ଭ ହୋଇ କେବେ ଶେଷ ହେଲା, ତାହା ନିର୍ଦ୍ଦିଷ୍ଟ ଭାବରେ ଜଣାଯାଇ

ନାହିଁ । ତେବେ ତାଙ୍କର ରାଜତ୍ୱ ୧୦୯୦ ଖ୍ରୀ: ବେଳକୁ ଶେଷ ହୋଇଥିଲା ବୋଲି ମୋଟାମୋଟି ଭାବରେ ଧରାପାଇଛୁ । ଉଲ୍ଲିଖିତ ତାମ୍ରଶାସନମାନଙ୍କରୁ ଦେଖାଯିବ ଯେ ଦେବେନ୍ଦ୍ରବର୍ମଣ ରାଜେନ୍ଦ୍ର, ଗ୍ରେଡ଼ଗଙ୍ଗ ଓ ରାମପାଳ ସମସାମୟିକ ଥିଲେ । ଏଣୁ 'ଯେଉଁ ସୋମବଂଶୀ ରାଜା କର୍ଣ୍ଣକେଶରୀଙ୍କୁ ରାମପାଳଙ୍କ ସେନାପତି ଜୟସିଂହ "ଅନୁଗ୍ରହ" କରିଥିଲେ, ସେହି କର୍ଣ୍ଣକେଶରୀଙ୍କୁ ଯେ ଗ୍ରେଡଗଙ୍ଗ "ପୁନଃ ସଂସ୍ଥାପନ" କରିଥିଲେ, ଏପରି ଅନୁମାନ ଆଦୌ ଅସଙ୍ଗତ ହେବ ନାହିଁ ; କାରଣ ଗ୍ରେଡଗଙ୍ଗ ଓ ରାମପାଳ ସମସାମୟିକ ଥିବାରୁ ଉତ୍କଳର କର୍ଣ୍ଣକେଶରୀ ମଧ୍ୟ ଉଭୟଙ୍କ ସମସାମୟିକ ହୋଇଥିବେ । କେଶରୀ ରାଜାଙ୍କ ସମସାମୟିକ ଲେଖା ରାମଚରିତ କହେ ଯେ ଜୟସିଂହ ଯେଉଁ ଉତ୍କଳର ରାଜାଙ୍କୁ ଅନୁଗ୍ରହ କରିଥିଲେ, ତାଙ୍କ ନାମ ଥିଲା କର୍ଣ୍ଣକେଶରୀ ଓ ମାଦଳା-ପାଞ୍ଜୀ କହେ ଯେ ଗ୍ରେଡଗଂଗ ଯେଉଁ କେଶରୀ ରାଜାଙ୍କୁ ପରାସ୍ତ କରି ଓଡ଼ିଶା ଦଖଲ କରିଥିଲେ, ତାଂକ ନାମ ଥିଲା ସ୍ୱର୍ଣ୍ଣକେଶରୀ ବା ଶୂନ୍ୟକେଶରୀ । ଏଣୁ କର୍ଣ୍ଣକେଶରୀ, ସ୍ୱର୍ଣ୍ଣକେଶରୀ ଓ ଶୂନ୍ୟ-କେଶରୀ ଯେ ଏକ ରାଜାଙ୍କ ପ୍ରକୃତ ଓ ବିକୃତ ନାମ ଏହା ଏକ ପ୍ରକାର ନିଶ୍ଚିତ ।

ତେବେ ଏମାନଙ୍କ ମଧ୍ୟରୁ କେଉଁଟି ପ୍ରକୃତ ନାମ ଓ କେଉଁଟି ବିକୃତ ନାମ, ତାହାହିଁ ବର୍ତ୍ତମାନ ବିଚାର୍ଯ୍ୟ । ଶୂନ୍ୟ କେଶରୀ ପ୍ରକୃତରେ ବିକୃତ ନାମ, ଏଣୁ ଏହାକୁ ବାଦ୍ ଦେଲେ ସ୍ୱର୍ଣ୍ଣକେଶରୀ ବା କର୍ଣ୍ଣକେଶରୀ ଶେଷ କେଶରୀ ରାଜାଙ୍କ ପ୍ରକୃତ ନାମ ହୋଇଥିବ । ମାତ୍ର ମାଦଳାପାଞ୍ଜୀ ଛଡ଼ା ଉତ୍କଳର ଅନ୍ୟ କୌଣସି କିମ୍ବଦନ୍ତୀରେ ସ୍ୱର୍ଣ୍ଣକେଶରୀ ବା ସୁବର୍ଣ୍ଣକେଶରୀ ନାମଟି

ମିଳେ ନାହିଁ । ଦଶ୍ପୋମରୁ ପ୍ରାପ୍ତ ଯେଉଁ ଅନ୍ୟ ଏକ ପାଞ୍ଜୀକୁ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ମାଦଳାପାଞ୍ଜୀ ସହିତ ପ୍ରକାଶ କରିଛନ୍ତି, ସେହି ପାଞ୍ଜି ରେ ଲେଖାଅଛି —

"କର୍ଣ୍ଣକେଶରୀ ଭୋଗ କଲେ ତେଳବନ ବର୍ଷ (ମାଦଳାପାଞ୍ଜୀ ପୃ ୧୦୭ ଦ୍ରୁ)।" ଏହି ପାଞ୍ଜିରେ ସ୍ୱର୍ଣ୍ଣକେଶରୀଙ୍କ ନାମ ମିଳେ-ନାହିଁ । ତା'ଛଡା ଶାରଳାଦାସ ତାଙ୍କ ମହାଭାରତରେ କର୍ଣ୍ଣକେଶରୀ ନାମଟି ଏକାଧିକ ଥର ଉଲ୍ଲେଖ କରିଛନ୍ତି । ବନପର୍ବରେ ଶ୍ରୀକୃଷ୍ଣ ଯୁଧିଷ୍ଠିରଙ୍କ ଚନ୍ଦ୍ରଭାଗାରେ ମାଘସ୍ନାନର ଫଳ ବର୍ଣ୍ଣନା କରିବାକୁ ଯାଇ କୃତାନ୍ତକ ନଗରୀରେ କର୍ଣ୍ଣକେଶରୀ ରାଜା ଥିଲେ ବୋଲି କହିଛନ୍ତି । ଅଶ୍ୱମେଧ ପର୍ବରେ ଅର୍ଜୁନ ଅଶ୍ୱ ଧରି ପଶ୍ଚିମଦେଶର ରାଜା କର୍ଣ୍ଣକେଶରୀଙ୍କ ରାଜ୍ୟରେ ପହଞ୍ଚି ଥିବାର ଉଲ୍ଲେଖ ମଧ୍ୟ ରହିଛି । ଅବଶ୍ୟ କର୍ଣ୍ଣକେଶରୀ ଯେ ଉତ୍କଳର ରାଜା, ଏକଥା ଶାରଳାଦାସ ଲେଖି ନାହାନ୍ତି । ଶାରଳାଦାସ ମହାଭାରତ ସହିତ ଯେଉଁମାନେ ସୁପରିଚିତ, ସେମାନେ ସ୍ୱୀକାର କରିବେ ଯେ ଶାରଳାଦାସ ଓଡ଼ିଶାର ଅନେକ ଐତିହାସିକ ଓ ଭୌଗୋଳିକ ନାମ ଓ ଘଟନାମାନଙ୍କୁ କାଳ୍ପନିକ ଓ ପୌରାଣିକ ରୂପେ ବର୍ଣ୍ଣନାକରି ଯାଇଛନ୍ତି । ମାଦଳାପାଞ୍ଜୀ ଲେଖା ହେବାର ଦେଢ଼ଶ ବର୍ଷରୁ ଅଧିକ କାଳପୂର୍ବେ ଶାରଳାଦାସ ମହାଭାରତ ଲେଖା ହୋଇଥିଲା । ଏହି ମହାଭାରତ ଲେଖା ହେବାବେଳେ କର୍ଣ୍ଣକେଶରୀ ନାମଟି କମ୍ବଦନ୍ତୀରେ ପ୍ରଚଳିତ ଥିଲା । ଏହି ହେତୁରୁ ଶାରଳାଦାସ ଏହି ନାମଟି ବାରମ୍ବାର ବ୍ୟବହାର କରିଥିବା ଖୁବ୍ ସମ୍ଭବ ।

ତାମ୍ରଶାସନମାନଙ୍କରୁ ସୋମବଂଶୀ ରାଜାମାନଙ୍କ ଯେଉଁ ନାମ ମିଳେ, ମାଦଳାପାଞ୍ଜିରେ ସେ ସମସ୍ତ ନାମ ଓଲଟ ପାଲଟ ଭାବରେ ରହିଛି । ତାମ୍ର ଲେଖର ସୋମବଂଶ ଓ ମାଦଳାପାଞ୍ଜିର କେଶରୀବଂଶ ଯେ ଏକ ଓ ଅଭିନ୍ନ ରାଜବଂଶ, ପୂର୍ବବର୍ତ୍ତୀ ଆଲୋଚନାରେ ଏହାର ସମସ୍ତ ପ୍ରମାଣ ଦିଆଯାଇଛି । ରାମଚରିତରେ ଥିବା ସୋମବଂଶୀ ରାଜା କର୍ଣ୍ଣକେଶରୀଙ୍କ ନାମଟି ମଧ୍ୟ ମାଦଳାପାଞ୍ଜିରେ ବିକୃତ ଭାବରେ ରହିଥିବାରୁ ଏଠାରେ ଆଉଥରେ ଉଭୟ ଉପାଦାନରୁ ପ୍ରାପ୍ତ ରାଜାମାନଙ୍କ ନାମ ନିମ୍ନରେ ଦିଆଗଲା ।

| ତାମ୍ରଲିପି ଓ ରାମ ଚରିତରୁ ପ୍ରାପ୍ତ | ମାଦଳା ପାଞ୍ଜୀରୁ ପ୍ରାପ୍ତ |
|---|---|
| ସୋମବଂଶ | କେଶରୀ ବଂଶ |
| ଜନମେଜୟ | ଜନ୍ମେଜୟ କେଶରୀ |
| ପ୍ରଥମ ଯଯାତି | ଯଯାତିକେଶରୀ |
| ଭୀମରଥ | ଭୀମକେଶରୀ |
| ଧର୍ମରଥ | ଧର୍ମକେଶରୀ |
| ନହୁଷ ଇନ୍ଦ୍ରରଥ | ଇନ୍ଦ୍ରକେଶରୀ |
| ଦ୍ୱିତୀୟ ଯଯାତି ଚଣ୍ଡୀହର | ଯଯାତି କେଶରୀ |
| ଉଦ୍ୟୋତ କେଶରୀ | ଅନନ୍ତ କେଶରୀ |
| କର୍ଣ୍ଣ କେଶରୀ | ସୁବର୍ଣ୍ଣ କେଶରୀ |
| | ସ୍ୱର୍ଣ୍ଣ କେଶରୀ, ଶୂନ୍ୟ କେଶରୀ |

ମୌଳିକ ମାଦଳା ପାଞ୍ଜୀରେ କେଶରୀ ବଂଶର ତାଲିକା କଅଣ ଥିଲା, ତାହା କହିବା କଠିନ ; କିନ୍ତୁ ବର୍ତ୍ତମାନ ଅମ୍ଭ-

ମାନଙ୍କ ଯେଉଁ କେଶରୀ ବଂଶର ତାଲିକା ମିଳେ ତାହା ଯେ ପୂରୀର "ଭୂକର୍ଷା ମାଳ" ପର, ଏହା ପୂର୍ବବର୍ତ୍ତୀ ଆଲୋଚନା-ମାନଙ୍କରେ ପ୍ରମାଣ ସହିତ ବିଶଦ ଭାବରେ ଦେଖାଇ ଦିଆଯାଇଛି । ମାଦଳାପାଞ୍ଜୀର ମୌଳିକତାକୁ ନାନା ଭାବରେ ଧ୍ୱଂସ କରାଯାଇଛି; ତଥାପି ଅସତ୍ୟ ସତ୍ୟକୁ ଧ୍ୱଂସ କରିପାରିନାହିଁ । ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱ (୧୪୯୭ ଖ୍ରୀ—୧୫୩୦ ଖ୍ରୀ:) ପର୍ଯ୍ୟନ୍ତ ଆମ୍ଭମାନଙ୍କ ଦେଶର କିମ୍ବଦନ୍ତୀ ଓ କାବ୍ୟକବିତାରେ ଉଦ୍ୟୋତ କେଶରୀ ନାମଟି ଯେ ଅବିକୃତ ଭାବରେ ଥିଲା, ତାହା ପ୍ରତାପରୁଦ୍ର ଦେବଙ୍କ ସଭାପଣ୍ଡିତ କବିଡିଣ୍ଡିମ ଜୀବଦେବଙ୍କ ଭକ୍ତିଭାଗବତ ମହାକାବ୍ୟର ନିମ୍ନଲିଖିତ ଶ୍ଳୋକରୁ ନିଶ୍ଚିତ ଭାବରେ ପ୍ରମାଣିତ ହୁଏ ।

ଉଦ୍ୟୋତ କେଶରୀକୁଳସ୍ୟ ଗୁରୁର୍ବଭୂବ
ତେଷୁ ପ୍ରସିଦ୍ଧମହିମା ଭବଦେବ ନାମା(କ) ॥

କିନ୍ତୁ ମାଦଳାପାଞ୍ଜୀରେ ଏହି ନାମଟି ବିକୃତ ହୋଇ ଅନନ୍ତକେଶରୀରେ ପରିଣତ ହୋଇଛି । ରାମଚରିତ, ଗଞ୍ଜାମରୁ ପ୍ରାପ୍ତ ପାଞ୍ଜୀ ଓ ଶାରଳାଦାସ ମହାଭାରତରେ କର୍ଣ୍ଣକେଶରୀ ନାମଟି ଅବିକୃତ ଭାବରେ ରହିଛି, କିନ୍ତୁ ମାଦଳାପାଞ୍ଜୀରେ ତାହା ବିକୃତ ହୋଇ ସ୍ୱର୍ଣ୍ଣକେଶରୀ ବା ଶୂନ୍ୟକେଶରୀରେ ପରିଣତ ହୋଇଛି । ଯେଉଁ ଗ୍ରନ୍ଥ ବାରମ୍ବାର ବିଭିନ୍ନ ହାତରେ ଲେଖା ହୁଏ, ତହିଁରେ ଥିବା ନାମ ଇତ୍ୟାଦି ବିକୃତ ହେବା ଅନିବାର୍ଯ୍ୟ ହୋଇପଡ଼େ । ସଂସ୍କୃତ ପୁରାଣମାନଂକରେ ମଧ୍ୟ ଏହି ତ୍ରୁଟି ଦେଖାଯାଏ । ନାନା-

(କ) J. K. H. R. S. Vol. I.

ଘାଟର ଶିଳାଲେଖରୁ ଜଣାଯାଏ ଯେ ଅଛ, ଶାଂଟବାହାନ ଦ୍ୱେଷୀଙ୍କ ସ୍ଥାପନ କର୍ତ୍ତାଙ୍କ ନାମଥିଲ ସିମୁକ, କିନ୍ତୁ ଏହି ନାମଟି ପୁରାଣ-ମାନଙ୍କରେ ଶିଶୁକ, ସିନ୍ଧୁକ ଓ ଶିପ୍ରକରୁଟରେ ଦେଖାଯାଏ । ଏହିପରି ଅଦ୍ଭୁତ ଅନେକ ନାମ ପୁରାଣମାନଙ୍କରେ ବିକୃତ ହୋଇଛି ।

ଶ୍ୱେତଗଙ୍ଗଙ୍କ ସହିତ ଜଡ଼ିତ ଥିବା ଅନ୍ୟାନ୍ୟ କିମ୍ବଦନ୍ତୀଠ ବର୍ତ୍ତମାନ ବିଚାର କରାଯାଉ । କବିବର ରାଧାନାଥ ତାଙ୍କ 'ନନ୍ଦିକେଶ୍ୱରୀ' କାବ୍ୟରେଲେଖିଛନ୍ତି ଯେ ଶେଷ କେଶରୀ ରାଜାଙ୍କ କନ୍ୟାର ନାମ ଥିଲ ନନ୍ଦିକା ଓ ଏହି ନନ୍ଦିକାଙ୍କ ପ୍ରେମ ଶ୍ୱେତ-ଗଙ୍ଗଙ୍କ ଦ୍ୱାରା ପ୍ରତ୍ୟାଖ୍ୟାତ ହେବାରୁ ସେ ଆତ୍ମହତ୍ୟା କରିଥିଲେ । ଏପରି କିମ୍ବଦନ୍ତୀ ମାଦଳାପାଞ୍ଜିରେ ନାହିଁ କିମ୍ବା ଅନ୍ୟ କୌଣସି ଗ୍ରନ୍ଥରେ ନାହିଁ । ଅଳ୍ପଦିନ ତଳେ ଅଧ୍ୟାପକ ରାଉତ ପ୍ରମାଣ କରିଛନ୍ତି ଯେ ନନ୍ଦକେଶ୍ୱରୀ କାବ୍ୟର ପରିକଳ୍ପନାଟି ଗ୍ରୀସୀୟ ସାହିତ୍ୟରୁ ସମ୍ପୂର୍ଣ୍ଣ ଭାବରେ ଗୃହୀତ ହୋଇଛି (୧୯୫୪ ମର୍ଯ୍ୟାଦା "ଝଙ୍କାର"ର ଷଷ୍ଠ ସଂଖ୍ୟା ଦ୍ରଷ୍ଟବ୍ୟ) । ତେବେ ରାଧାନାଥ ତାଙ୍କ କାବ୍ୟର ଶ୍ୱେତଗଙ୍ଗ ଓ ସୁବର୍ଣ୍ଣକେଶରୀ ନାମ ଦୁଇଟି ମାଦଳାପାଞ୍ଜିରୁ ପାଇଥିଲେ ଓ ନନ୍ଦକେଶ୍ୱରୀ ନାମଟି କଟକରେ ଥିବା ପଠାବଶେଷର ନାମରୁ ପାଇଥିଲେ । ପଠାଟିର ମୌଳିକ ନାମ ନନ୍ଦକେଶ୍ୱର ପଠା ଥିଲ; କିନ୍ତୁ କାଳକ୍ରମେ ତାହା ନନ୍ଦ-କେଶ୍ୱରୀ ହୋଇଛି । ଆଜି କଟକ ସହରର ଯେଉଁ ଅଂଶ 'ନନ୍ଦକେଶ୍ୱରୀ ପଠା' ନାମରେ ଅଭିହିତ, ସେଠାରେ ଯେ ନନ୍ଦିକେଶ୍ୱର ମହାଦେବ ଥିଲେ, ତାହା ଶାରଳାଦାସ ମହାଭାରତର ଅଶ୍ୱମେଧ ପର୍ବରେ ଥିବା ନିମ୍ନଲିଖିତ ପଦ୍ୟାଂଶମାନଙ୍କରୁ ପ୍ରମାଣିତ ହୁଏ ।

ନନ୍ଦନବନେ ଯାଇଁ ଶଙ୍କେ କଲେ ସବ୍ୟସାଚୀ
ନନ୍ଦକେଶ୍ୱର ଯେ ତହିଁ ବସେ କରିଛନ୍ତି ।
ନନ୍ଦିକେଶ୍ୱର ଯେ ଚୁହାଇଲେ ଅର୍ଜୁନଙ୍କୁ
ଅମୃତପାନ ଭୋଜନ ଦେଲେକ ତାହାଙ୍କୁ ॥

ଶିବଙ୍କ ବାହାନ 'ନନ୍ଦୀ' ବା ନନ୍ଦୀଙ୍କ ଶବ୍ଦରୁ ନନ୍ଦିକେଶ୍ୱର ନାମଟି ଉତ୍ପନ୍ନ ହୋଇଥିବ । ବିରଜା ମହାତ୍ମ୍ୟରୁ ଜଣାଯାଏ ଯେ ଜାଜପୁରରେ ମଧ୍ୟ ନନ୍ଦିକେଶ୍ୱର ନାମକ ମହାଦେବଙ୍କ ପିଠ ଥିଲ ।

ଚୋଡ଼ଗଙ୍ଗଦେବ ପଞ୍ଚକଟକ ଅଧିକାର କରିଥିବା କଥା ମାଦଳାପାଞ୍ଜିରେ ଉଲ୍ଲିଖିତ ଅଛି । ଏହାର ବିଶଦ ଆଲୋଚନା ଆଗରୁ କରାଯାଇଛି ; ଏଣୁ ଏଠାରେ ତାର ପୁନରାବୃତ୍ତି ଅନାବଶ୍ୟକ । କିନ୍ତୁ ତାଙ୍କ ଧର୍ମମତ ସମ୍ବନ୍ଧରେ ମାଦଳାପାଞ୍ଜିରେ ଯାହା ଲେଖାଅଛି, ତାହା ଏଠାରେ ଆଲୋଚନା କରିବା ଆବଶ୍ୟକ ହୋଇଛି । ଚୋଡ଼ଗଙ୍ଗଦେବ ତାଙ୍କ ବଂଶ ପରମ୍ପରା ଅନୁଯାୟୀ ପରମ ଶୈବଭକ୍ତ ଥିଲେ ; କିନ୍ତୁ ଉତ୍କଳକୁ ଅଧିକାର କରିବାପରେ ସେ ଜଗନ୍ନାଥଙ୍କ ପ୍ରାଧାନ୍ୟ ସ୍ୱୀକାର କରିବାପାଇଁ ବାଧ୍ୟ ହୋଇଥିଲେ ଓ ତାଙ୍କ ପାଇଁ ମନ୍ଦିର ମଧ୍ୟ ନିର୍ମାଣ କରିଥିଲେ । ସେତେବେଳେ ଓଡ଼ିଶାରେ ଜଗନ୍ନାଥଙ୍କ ପ୍ରଧାନ୍ୟ ଏପରି ଅପ୍ରତିଦ୍ୱନ୍ଦୀ ହୋଇ ଉଠିଥିଲ ଯେ ସେହି ପ୍ରାଧାନ୍ୟ ସ୍ୱୀକାର ନ କଲେ ଓଡ଼ିଶାରେ ରାଜାରୂପେ ସ୍ୱୀକୃତ ହେବା ମଧ୍ୟ କାହାର ପକ୍ଷରେ ସମ୍ଭବ ନଥିଲା । ଏଣୁ ଓଡ଼ିଶାକୁ ଦଖଲ କରିବା ପୂର୍ବରୁ ଚୋଡ଼ଗଙ୍ଗ ଯେତେଗୁଡ଼ିଏ ତାମ୍ରଶାସନ ଦାନ କରିଥିଲେ, ସେଗୁଡ଼ିକରେ ତାଙ୍କର "ପରମ-

ମାଟିହର୍ଶ୍ବର" ଉପାଧି ଦେଖାଯାଏ ; କିନ୍ତୁ ଉତ୍କଳକୁ ଦଖଲ କରିବାପରେ ଯେ "ପରମମାହେଶ୍ବର" ଉପାଧି ଧାରଣ କରିଥିବା ମଧ୍ୟ ତାଙ୍କର କେତେକ ତାମ୍ର ଲେଖରୁ ପ୍ରମାଣିତ ହୁଏ । ମାତ୍ର ଆମଦେଶର ସମସ୍ତ କିମ୍ବଦନ୍ତୀ ତାଙ୍କୁ ଶାକ୍ତମତ ବିରୋଧୀରୂପେ ଉପସ୍ଥାପିତ କରୁଛି । ଅଧ୍ୟାପକ ମହାନ୍ତି ତଜୋତି ପୋଥି ସାହାଯ୍ୟରେ ଯେଉଁ ମାଦଳାପାଞ୍ଜି ପୁସ୍ତକ ପ୍ରକାଶ କରିଛନ୍ତି, ସେଥି ମଧ୍ୟରୁ ଗ୍ରୌଡ଼ଗଙ୍ଗଙ୍କ ସମ୍ବନ୍ଧରେ ପ୍ରଥମ ପାଞ୍ଜିରେ ଅଛି—"(ସେ) ଓଡ଼ିଶା ଚୋଷାଣୀମାନ କଲଲେ ।" ଦ୍ବିତୀୟ ପାଞ୍ଜିରେ ଅଛି— 'ତହୁଁ ଆସି ଓଡ଼ିଶା ଗୋସାଣୀଙ୍କୁ ସମସ୍ତ କଲଲେ ।' ମାଦଳା ପାଞ୍ଜି ଛଡ଼ା ଗଣ୍ଡିମନ୍ତ୍ର ପ୍ରାପ୍ତ ପାଞ୍ଜିରେ ଅଛି—"ଚୁଡ଼ଙ୍ଗଦେବ ଭୋଗକଲେ ୬୪ ବର୍ଷ । ଏ ରଜା ସମସ୍ତ ଚୋଷାଣୀମାନଙ୍କୁ ବନ୍ଦୀ କଲେ । ବିରଜା, ଗୋସାଣୀ, କାଳିକା, ଚାମଚଣ୍ଡୀ, ସର୍ବମଙ୍ଗଳା ଏ ପାଞ୍ଚଙ୍କୁ ବନ୍ଦୀ କରି ନ ପାରିଲେ ।" ଶାରଳା-ଦାସ ମଧ୍ୟ ଗ୍ରୌଡ଼ଗଙ୍ଗଙ୍କୁ ଶାକ୍ତମତର ବିରୋଧୀରୂପେ ବର୍ଣ୍ଣନା କରିଛନ୍ତି । ମଧ୍ୟପର୍ବରେ ଶରଧନୁର ଶରେଣ ନାମକ ଉପାଖ୍ୟାନରେ ଶାରଳା ଦାସ ନିମ୍ନଲିଖିତ ଭାବରେ ଚୋଷାଣୀକର ରାମଚଣ୍ଡୀଙ୍କୁ ବନ୍ଦନା କରିଛନ୍ତି ।

ପ୍ରଥମେ ବନ୍ଦଇଁ ମାଗୋ କୋଣାରକ ଚଣ୍ଡୀ
ମୁଖଗୋଟି ଶୋଭା ତାର ସିନ୍ଦୁରରେ ମଣ୍ଡି ।

×   ×   ×   ×   ×

ମୃଦୁଫୁଲରୂପେ ମାଗୋ ମ.ଠିଆ କାଠର
ମାକଣା ନାମରେ ମାଗୋ ହୋଇଲୁ ବାହାର ।

ତେଡ ନୃଙ୍ଗଙ୍କୁ ମାଗୋ ଭକ୍ତି ତୁ ଅଚଳ
ହାତେ ହାତେ ବଢ଼ି ମାଗୋ ସମୁଦ୍ରେ ପଶିଲ ।
ଅନାଦି ଅପର୍ଣ୍ଣା ମାଗୋ ଜଗଜ୍ଜନ ମାଏ
ଜଟେଳ୍ଲ ଇଟେଳ୍ଲ ଦେବୀ ମାଗୋ ରାମଚଣ୍ଡୀ ମାୟେ ॥

କୋଣାର୍କରେ ଆଜି ପର୍ଯ୍ୟନ୍ତ କିମ୍ବଦନ୍ତୀ ପ୍ରଚଳିତ ଅଛି ଯେ ରାମଚଣ୍ଡୀ କଳାପାହାଡ଼ଙ୍କୁ ଭକ୍ତି ଦେଇ କଲସୀ କାଖରେ ନେଇ ଆଖିଆ ମୁହାଣକୁ ଚାଲିଗଲେ । କିମ୍ବଦନ୍ତୀଟି ପଦ୍ୟାକାରରେ ପ୍ରଚଳିତ ଅଛି ଓ ତାହା ସ୍ଵର୍ଗୀୟ କୃପାସିନ୍ଧୁ ମିଶ୍ର ତାଙ୍କ କୋଣାର୍କ ପୁସ୍ତକରେ ଲିପିବଦ୍ଧ କରିଛନ୍ତି—

ଭଲ ରାମଚଣ୍ଡୀ ଭଲ ରେ
କଳାପାହାଡ଼ଙ୍କୁ ଦୁଆରେ ବସାଇ
ଭଲ ପାଣିପାଇଁ ଗଲ ରେ ।

ଶାରଳାଦାସ ମହାଭାରତ ଲେଖା ହେବାର ଶହେ ବର୍ଷରୁ ଅଧିକ କାଳପରେ କଳାପାହାଡ଼ ଓଡ଼ିଶାକୁ ଆସିଥିଲେ । ସେ ଆସିବାପରେ ଓଡ଼ିଶାରେ ଯେ ଯାହା ଅପକୀର୍ତ୍ତି କରିଥିଲେ, ସେ ସମସ୍ତ ତାଙ୍କଠାରେହିଁ ଆରୋପିତ ହେଲା । ବସ୍ତୁତଃ କିମ୍ବଦନ୍ତୀ ଶେଷବେଳକୁ ଯଯାତିକେଶରୀଙ୍କ ସମସ୍ତ ଗଠନମୂଳକ କାର୍ଯ୍ୟର ଓ କଳାପାହାଡ଼ଙ୍କ ସମସ୍ତ ଧ୍ଵଂସମୂଳକ କାର୍ଯ୍ୟର ପ୍ରତୀକରୂପେ ଧରିନେଇ ସମସ୍ତ ଇତିହାସକୁ ଓଲଟପାଲଟ କରିଦେଲା । କିମ୍ବଦନ୍ତୀର ଏହା ପରି ବଚିତ୍ର ଗତି ! ଶାରଳାଦାସ ମହାଭାରତର ଉଲ୍ଲିଖିତ ପଦମାନଙ୍କରୁ ସ୍ପଷ୍ଟ ଜଣାଯାଉଛି ଯେ

ରାମଚଣ୍ଡୀଙ୍କର ସ୍ଥାନାନ୍ତରିତ ହେବାର କାରଣ ହୋଇଥିଲେ ବଡ଼ଚୁଡ଼ଙ୍ଗ ବା ସ୍ୱୟଂ ସମ୍ରାଟ ଚୋଡ଼ଗଙ୍ଗଦେବ । ଚୋଡ଼ଗଙ୍ଗ ଦେବଙ୍କ ସାନଭାଇ ପ୍ରମାଡିଦେବ (ପରବର୍ତ୍ତୀ ଦେବଙ୍କ)ଙ୍କ ତେଣୁ ବୃଦ୍ଧ ଥିଲେ ତାଙ୍କ ନାମ ମଧ୍ୟ ଚୋଡ଼ଗଙ୍ଗ ଥିଲା ଓ ଏଥି ସ୍ଥାନ ଚୋଡ଼ଗଙ୍ଗ ତାଙ୍କ ଜ୍ୟେଷ୍ଠ ଭ୍ରାତାଙ୍କ ଅଧୀନରେ ଜଣେ ପ୍ରାଦେଶିକ ଶାସନ କର୍ତ୍ତା ମଧ୍ୟ ଥିଲେ । ଏହି ହେତୁରୁ ଶାରଳାଦାସ ସମ୍ରାଟ୍ ଚୋଡ଼ଗଙ୍ଗଙ୍କୁ ବଡ଼ ଚୁଡ଼ଙ୍ଗ ବୋଲି କହିଛନ୍ତି ।

ଏ ସମସ୍ତ ବର୍ଣ୍ଣିତ କିମ୍ବଦନ୍ତୀରୁ ଜଣାଯାଏ ଯେ ଚୋଡ଼ଗଙ୍ଗ ଦେବ ଶାକ୍ତ ମତର ବିରୋଧୀ ଥିଲେ । ତାଙ୍କ ସମ୍ବନ୍ଧୀୟ କିମ୍ବଦନ୍ତୀ ମାନେ ଆଲୋଚନା କଲାପରେ, ମାଦଳାପାଞ୍ଜୀର ଚୋଡ଼ଗଙ୍ଗ ଦେବ ଓ ଗଙ୍ଗେଶ୍ୱର ଦେବ ଏକ ଓ ଅଭିନ୍ନ ବ୍ୟକ୍ତି କି ନା ତାହାହିଁ ବିଚାର କରାଯାଉ । ତାମ୍ର-ଶିଳା ଲେଖର ପ୍ରମାଣ ସାହାଯ୍ୟରେ ଆଗରୁ କୁହାଯାଇଛି ଯେ ଚୋଡ଼ଗଙ୍ଗ ଦେବଙ୍କ ଅନ୍ତତଃ ଚାରୋଟି ନାମ ଥିଲା, ଯଥା ଚାଳୁକ୍ୟ ଗଙ୍ଗ, ବିକ୍ରମ ଗଙ୍ଗେଶ୍ୱର, ବୀର ରାଜେନ୍ଦ୍ର, ଚୋଡ଼ଗଙ୍ଗ ଓ ଗଙ୍ଗେଶ୍ୱର ଦେବ । କିନ୍ତୁ ମାଦଳାପାଞ୍ଜୀରେ ଚୋଡ଼ଗଙ୍ଗ ଓ ଗଙ୍ଗେଶ୍ୱର ନାମ ଦୁଇଟି ଦୁଇଜଣ ରାଜାଙ୍କ ନାମ ରୂପେ ପ୍ରଦର୍ଶିତ ହୋଇଛି । ଅର୍ଥାତ୍ ଗଙ୍ଗେଶ୍ୱରଙ୍କୁ ଗଙ୍ଗବଂଶର ସ୍ଥାପୟିତା ଚୋଡ଼ଗଙ୍ଗଙ୍କ ପୁତ୍ରରୂପେ ପ୍ରଦର୍ଶନ କରାଯାଇଛି । ଏହା ଏକ ବିରାଟ ପ୍ରକାର ଭ୍ରମ, ତଥାପି ଏହି ଭ୍ରମ ଓଡ଼ିଶାର ଇତିହାସରେ ବହୁଦିନ ଧରି ଚାଲି ଆସିଛି । ଏହି ଭ୍ରମ ହେତୁରୁ କବିବର ରାଧାନାଥ ନନ୍ଦିକେଶ୍ୱରୀ କାବ୍ୟରେ ଚୋଡ଼ଗଙ୍ଗଙ୍କୁ ପରମ ଜିତେନ୍ଦ୍ରିୟରୂପେ ଓ ପାର୍ବତୀ କାବ୍ୟରେ ଗଙ୍ଗେଶ୍ୱରଙ୍କୁ ପରମ କାମୁକରୂପେ ବର୍ଣ୍ଣନା କରି ପରସ୍ପରବିରୋଧୀ ମତ ସୃଷ୍ଟି

କରିଛନ୍ତି । ମାଦଳାପାଞ୍ଜୀ କମ୍ବଦନ୍ତୀ ଉପରେ ପ୍ରତିଷ୍ଠିତ ଓ ଏହା ଚୋଡ଼ଗଙ୍ଗ ଦେବଙ୍କ ପ୍ରାୟ ପାଞ୍ଚଶତ ବର୍ଷ ପରେ ଲିଖିତ । ଏଣୁ ଏହା ଭ୍ରମପୂର୍ଣ୍ଣ ହେବା ଅତ୍ୟନ୍ତ ସ୍ୱାଭାବିକ । ତଥାପି ସୁଦ୍ଧା ଭ୍ରମ ମଧ୍ୟରେ ସତ୍ୟ ଲୁକ୍‌କାୟିତ ହୋଇ ରହିଛି । ଅଧ୍ୟାପକ ମହାନ୍ତି ଯେଉଁ ତିନୋଟି ପୋଥି ସାହାଯ୍ୟରେ ମାଦଳାପାଞ୍ଜି ପୁସ୍ତକ ପ୍ରକାଶ କରିଛନ୍ତି, ସେଥି ମଧ୍ୟରୁ ପ୍ରଥମ ପୋଥିଟି ଅଧିକ ବିଶ୍ୱାସ ଯୋଗ୍ୟ । ଏହି ପୋଥିରେ ଅଛି ଯେ ଚୋଡ଼ଗଙ୍ଗ ଓ ଗଙ୍ଗେଶ୍ୱର ଯଥାକ୍ରମେ ୬୬ ବର୍ଷ ଓ ୯ ବର୍ଷ ରାଜତ୍ୱ କରିଥିଲେ । ଅତଏବ ଉଭୟ ରାଜା ସର୍ବମୋଟ ୭୫ ବର୍ଷ ରାଜତ୍ୱ କରିଥିଲେ । ତାମ୍ର ଶିଳାଲେଖରୁ ପ୍ରମାଣିତ ହୁଏ ଯେ ଚୋଡ଼ଗଙ୍ଗ ୭୮ ବର୍ଷ ରାଜତ୍ୱ କରିଥିଲେ । ଏଣୁ ରାଜତ୍ୱ କାଳ ଗଣନାରେ ଉଭୟ ଉପାଦାନର ପ୍ରାୟ ଅମେଳ ନାହିଁ । ପାଞ୍ଜିକାର ଜଣେ ରାଜାଙ୍କ ଦୁଇଟି ନାମକୁ ଦୁଇଜଣ ରାଜାଙ୍କ ନାମ ରୂପେ ଭ୍ରମବଶତଃ ଧରିନେବା ପରେ ଜଣେ ରାଜାଙ୍କ ରାଜତ୍ୱ କାଳକୁ ଦୁଇଜଣଙ୍କ ମଧ୍ୟରେ ବାଣ୍ଟି ଦେବାପାଇଁ ବାଧ୍ୟ ହୋଇଛନ୍ତି ।

ଚୋଡ଼ଗଙ୍ଗ ଓ ଗଙ୍ଗେଶ୍ୱର ଏକ ଓ ଅଭିନ୍ନ ବ୍ୟକ୍ତି ହୋଇଥିବାରୁ ଗଙ୍ଗେଶ୍ୱରଙ୍କ ସମ୍ବନ୍ଧରେ ମାଦଳାପାଞ୍ଜୀରେ ଯେଉଁ କୁତ୍ସିତ କମ୍ବଦନ୍ତୀ ରହିଛି, ତାହା ମଧ୍ୟ ଏଠାରେ ବିଚାରଯୋଗ୍ୟ । ପାଞ୍ଜୀରେ ବର୍ଣ୍ଣିତ ଅଛି ଯେ ଗଙ୍ଗେଶ୍ୱରଙ୍କ ତାଙ୍କ କନ୍ୟା ସହିତ ପାପପ୍ରଣୟ ଥିଲା ଓ ତାହାର ଫଳରେ କନ୍ୟାର ଗର୍ଭ ହେଲା । ତାପରେ ବ୍ରାହ୍ମଣମାନଙ୍କ ଦ୍ୱାରା ପ୍ରଯୁକ୍ତ ପ୍ରାୟଶ୍ଚିତ୍ତର ବିଧାନ ଅନୁସାରେ କନ୍ୟାର କାଖରେ ପାଣିକଳସୀ ଦେଇ ଓ ତାକୁ ଚଲାଇ ନେଇ ତା ପାଦରୁ ଯେଉଁଠାରେ ରକ୍ତ ବାହାରି ଥିଲା, ରାଜା ସେଠାରେ

ଗୋଟିଏ ପୁଷ୍କରିଣୀ ଖୋଳାଇଥିଲେ ଓ ତାର ଦ୍ୱୀପଦେଶରେ କନ୍ୟାକୁ ରଖାଇ ଥିଲେ ! ଏହି ପୁଷ୍କରିଣୀର ନାମ ବର୍ତ୍ତମାନ କୌଶଲ୍ୟା ଗଙ୍ଗ ହୋଇଛି ।

ଏହି କମ୍ବଦନ୍ତୀ ଅବଲମ୍ବନରେ କବିବର ରାଧାନାଥ ପାର୍ବତୀ କାବ୍ୟ ଲେଖିଛନ୍ତି ଓ ତାହା ଶୋଡ଼ଶୀବ୍ୟାପୀ ଉତ୍କଳ ସାହିତ୍ୟରେ ବିବାଦସୃଷ୍ଟି କରିଛି । ଏହି କମ୍ବଦନ୍ତୀ କେତେଦୂର ସତ୍ୟ ? ସାମାନ୍ୟ ଚିନ୍ତାକଲେ ଜଣାଯାଏ ଯେ ଏହି କମ୍ବଦନ୍ତୀ କଦାପି ଐତିହାସିକ ସତ୍ୟ ଉପରେ ପ୍ରତିଷ୍ଠିତ ନୁହେଁ । ଧଉଳି ପାହାଡ଼-ନିକଟସ୍ଥ କୌଶଲ୍ୟାଗଙ୍ଗ ଗୋଟିଏ ପୁଷ୍କରିଣୀ ନୁହେ, କିମ୍ବା ମାଦଳାପାଞ୍ଜୀ ବର୍ଣ୍ଣିତ ଦ୍ୱୀପଦଶ୍ରୀ ସେଠାରେ ନାହିଁ, କିମ୍ବା ପାଞ୍ଜୀ-ବର୍ଣ୍ଣିତ ଚୈତ୍ରଗଙ୍ଗଙ୍କର କନ୍ୟା ପାଇଁ ନିର୍ମିତ ବାସଗୃହର ଭଗ୍ନାବଶେଷ ଏହି ତଥା କଥିତ ଦ୍ୱୀପଦଶ୍ରୀରେ ନାହିଁ । ଏଣୁ ମାଦଳାପାଞ୍ଜୀର କାହାଣୀ ମୂଳରୁ ଅସତ୍ୟ ବୋଲି ଧରାପଡ଼ିଯାଉଛି । କୌଶଲ୍ୟାଗଙ୍ଗ ଗୋଟିଏ କ୍ଷୁଦ୍ର ପ୍ରାକୃତିକ ହ୍ରଦ ଓ ଏହାର ମଧ୍ୟ ସ୍ଥଳରେ ଗୋଟିଏ କ୍ଷୁଦ୍ର ପ୍ରାକୃତିକ ଚଡ଼ା ରହିଛି । ପୂର୍ବେ ଏହା ଦୟାନଦୀର ଅଂଶ ବିଶେଷ ଥିଲା ବୋଲି ମନେ ହୁଏ ! କିଛିଦିନ ପୂର୍ବେ ଓଡ଼ିଶା ସରକାରଙ୍କ ମତ୍ସ୍ୟ ଉନ୍ନୟନ ବିଭାଗ କୌଶଲ୍ୟା ଗଙ୍ଗର ଜୀର୍ଣ୍ଣ ସଂସ୍କାର କଲାବେଳେ ଏହାର ଚଡ଼ାରୁ ଗୋଟିଏ ପ୍ରାଚୀନ ମନ୍ଦିରର କେତେକ ଅଂଶ ଉଦ୍ଧାର କରିଛନ୍ତି । ମାତ୍ର ଚଡ଼ା ମଧ୍ୟରେ ବାସଗୃହର କୌଣସି ଭଗ୍ନାବଶେଷ ନାହିଁ । ନିର୍ଜନ ଚଡ଼ା ଓ ପାହାଡ଼ ଇତ୍ୟାଦିରେ ବହୁ ଦିନେ ହିନ୍ଦୁମନ୍ଦିର-ମାନ ନିର୍ମିତ ହୋଇ ଅଛିନ୍ତି ; କୌଶଲ୍ୟାଗଙ୍ଗର ଚଡ଼ାରେ ମଧ୍ୟ ଏହିପରି ଭାବରେ ମନ୍ଦିରଟିଏ ନିର୍ମିତ ହୋଇଥିଲା । କିନ୍ତୁ ଏଠାରେ ବାସଗୃହର ଚିହ୍ନବର୍ତ୍ତି ନାହିଁ ।

ଏଣୁ ପ୍ରତ୍ନତତ୍ତ୍ୱହିଁ ପ୍ରଥମେ ମାଦଳାପାଞ୍ଜୀ ବର୍ଣ୍ଣିତ ଏହି କମ୍ବଦନ୍ତୀର ଅସାରତା ପ୍ରତିପାଦନ କରୁଛୁ । ତାହା ଛଡ଼ା ପାଞ୍ଜୀରେ ଗଙ୍ଗେଶ୍ୱରଙ୍କ ପାପର ଯେଉଁ ବର୍ଣ୍ଣନା ଅଛି, ତାହା ଗୋଟିଏ ସମ୍ପୂର୍ଣ୍ଣ ଅସମ୍ଭବ କଥା । ଲୋକଲୋଚନ ଅନ୍ତରାଳରେ କମ୍ବଦନ୍ତୀ ବର୍ଣ୍ଣିତ ପାପ ପରି ବହୁ ପାପ ହୁଏତ ଘଟିଯାଉଛି ବା ଯାଉଛି, କିନ୍ତୁ କୌଣସି ପାପୀ ସ୍ୱତଃ ପ୍ରବୃତ୍ତ ହୋଇ ଲୋକ-ସମାଜରେ ତାହା ପ୍ରକାଶ କରେନାହିଁ । ଗଙ୍ଗାଧୀଶ୍ୱର ଗଙ୍ଗେଶ୍ୱରଙ୍କ ପ୍ରେମ ପାଇଁ କଅଣ ପତ୍ନୀର ଅଭାବ ଥିଲା ଯେ ସେ ତାଙ୍କ ନିଜ କନ୍ୟା ସହିତ ପାପ ପ୍ରଣୟ କରୁଥିଲେ ? ଯଦି ଯୁକ୍ତିଛଳରେ ଧରାଯାଏ ଯେ ସେ ତାହା କରିଥିଲେ, ତାହାହେଲେ ସେ ଊର୍ଦ୍ଧ୍ୱମ ବଜାଇ ବ୍ରାହ୍ମଣ ଡ଼କାଇ, କନ୍ୟାକୁ ଚଲାଇ, ଯୋଜରି ଖୋଲାଇ, ତାଙ୍କ ପାପର ବିସ୍ତୃତ ବର୍ଣ୍ଣନା ଦେଉଥିଲେ କାହିଁକି ? ରାଜରାଜେଶ୍ୱର ଗଙ୍ଗେଶ୍ୱରଙ୍କ କଥା ଦୂରରେ ଥାଉ, ଭୂତ ଓ ବର୍ତ୍ତମାନର କୌଣସି ସାମାନ୍ୟ ବ୍ୟକ୍ତି ସୁଦ୍ଧା ଏପରି ପାପର ଏପରି ବର୍ଣ୍ଣନା ଦେଇ ଥିବାର କୌଣସି ଇତିହାସ ବା କମ୍ବଦନ୍ତୀରେ ଅଛି କି ? ଏଠାରେ ଆଉ ଗୋଟିଏ ବିଷୟ ମଧ୍ୟ ଲକ୍ଷ୍ୟ କରିବାର କଥା । ଚୋଡ଼ଗଙ୍ଗ ବ୍ରାହ୍ମଣମାନଙ୍କ ଠାରେ ନିଜର ପାପ ପ୍ରକାଶ କରିବା ପରେ ମାଦଳା ପାଞ୍ଜୀ ଅନୁସାରେ ତାଙ୍କୁ ତାଙ୍କର "ଉପସ୍ଥ" ଛେଦନ କରି ହୋମ କରିବାକୁ ଓ ନିଜ କନ୍ୟାକୁ ନିର୍ବାସନ କରିବାକୁ ବ୍ରାହ୍ମଣମାନେ ବିଧାନ କରିଥିଲେ । କିନ୍ତୁ ପାଞ୍ଜୀକାର ଚୋଡ଼ଗଙ୍ଗଙ୍କ ନାମଟି ପାଇ ଖାଲି କନ୍ୟାର ନିର୍ବାସନ କଥାଟା ଲେଖିଦେଇଛନ୍ତି ; କିନ୍ତୁ ଗଙ୍ଗେଶ୍ୱରଙ୍କ "ଉପସ୍ଥ" ଛେଦନ କରି ହୋମ କରି ଗଲା କି ନା ଏବିଷୟରେ କିଛି କହି ନାହାନ୍ତି । ଯେଉଁ ପାଞ୍ଜୀ କହେ ଯେ ରାଣୀ ପୁଅ ଚୋଡ଼ଗଙ୍ଗ ପିଲାଙ୍କ ଖେଳରେ

ରାଜା ହେଉଁ ହେଉଁ ସତରେ ରାଜା ହୋଇଗଲା; ସେଉଁ ପାଞ୍ଜି କହେ
ଯେ ଚୋରଗଙ୍ଗା ତା ମାଉସୀ ନେତାଇ ଧୋବଣୀ ପାଖକୁ ଗଲା-
ବେଳେ ଧୋବଣୀ ଚୁଲ୍ଲୀ ଭିତରେ ଚୋଡ଼ କାଳୁଥିଲା ଓ ଚୋରଗଙ୍ଗାର
ଡାକ ଶୁଣି ଚୋଡ଼ପୂଅକୁ ଚୁଲ୍ଲୀଭିତରେ ଦେଇ ତା ସଙ୍ଗରେ କଥା
କହିଲା; ଯେଉଁ ପାଞ୍ଜି କହେ ଯେ ନେତାଇ ଧୋବଣୀ ବାଡ଼ିର ଅଠ-
ରଙ୍ଗା କଦଳୀ ଖାଇଲା ପରେ ଚୋରଗଙ୍ଗାର ଅଷ୍ଟାଦଶ ବିଦ୍ୟା ହାସଲ
ହୋଇଗଲା ଓ ଯେଉଁ ପାଞ୍ଜି କହେ ଯେ ଗଙ୍ଗେଶ୍ୱର ଚୋଡ଼ଗଙ୍ଗଙ୍କ
ପୁତ୍ର ଥିଲେ, ସେହି ମାଦଳାପାଞ୍ଜି ଯେ ଚୋରଗଙ୍ଗା ଓରଫ୍ ଚୋଡ଼ଙ୍କ
ଓରଫ୍ ଚୋଡ଼ଗଙ୍ଗ ଓରଫେ ଗଙ୍ଗେଶ୍ୱରଙ୍କୁ କୁତ୍ସିତ କମ୍ବଦନ୍ତୀ
ସହିତ ଜଡ଼ିତ କରିବ, ଏଥିରେ ଆଶ୍ଚର୍ଯ୍ୟ ହେବାର କାରଣ ନାହିଁ ।

ତାମ୍ର ଓ ଶିଳାଲେଖ ଇତ୍ୟାଦିରୁ ଗଙ୍ଗବଂଶର ପ୍ରତିଷ୍ଠାତା
ଚୋଡ଼ଗଙ୍ଗଙ୍କ ସମ୍ବନ୍ଧରେ ଯେଉଁ ସାମାନ୍ୟ ଇତିହାସ ମିଳେ,
ସେଥିରୁ ପ୍ରମାଣିତ ହୁଏ ଯେ ଇଉରୋପର ମହାବୀର ଫ୍ରେଡ଼େରିକ୍
ବା ଚାର୍ଲସ୍ ଲୁଇସ୍ ପରି ସେ ଜଣେ ଅଦ୍ୱିତୀୟ ବୀର ପୁରୁଷ
ଥିଲେ ; ପୁରୀର ମହାମନ୍ଦିର ନିର୍ମାଣ କରି ଅକ୍ଷୟ କୀର୍ତ୍ତି ରଖିଥିଲେ;
ସୁଦୀର୍ଘ ୭୦ ବର୍ଷ ରାଜତ୍ୱ କରି ଉତ୍କଳକୁ ଦୁର୍ଭେଦ୍ୟ
ଦୁର୍ଗମାଳାରେ ଭୂଷିତ କରିଥିଲେ ଓ ଗଙ୍ଗାଠାରୁ ଗୋଦାବରୀ
ପର୍ଯ୍ୟନ୍ତ ସମସ୍ତ ଭୂଖଣ୍ଡ ଅଧିକାର କରି ଦକ୍ଷିଣ ପୂର୍ବ ଭାରତରେ
ଏକାଙ୍ଗ ଚକ୍ରବର୍ତ୍ତୀ ହୋଇଥିଲେ । ଯଦି କେହି ତାମ୍ର ଶିଳା-
ଲେଖରେ ଥିବା ତାଙ୍କର ଏହି ଇତିହାସକୁ ବିଶ୍ୱାସ ନ କରି
ମାଦଳାପାଞ୍ଜିରେ ଥିବା ତାଙ୍କ ସମ୍ବନ୍ଧୀୟ ଉଲ୍ଲିଖିତ ଗଳ୍ପ ଓ
ଭ୍ରମପାନ ବିଶ୍ୱାସ କରନ୍ତି, ତାହାହେଲେ ସେ ପାଞ୍ଜିରେ ଥିବା
ଏହି କୁତ୍ସିତ କମ୍ବଦନ୍ତୀକୁ ମଧ୍ୟ ବିଶ୍ୱାସ କରି ପାରନ୍ତି । କିନ୍ତୁ ଏହି

କୁର୍ଣ୍ଣିତ କମ୍ବଦନ୍ତୀ ଗଙ୍ଗଙ୍ଗଙ୍କ ଅମଳରେ ଘଟିଥିବା କୌଣସି ପ୍ରକୃତ ଘଟନା ଉପରେ ପ୍ରତିଷ୍ଠିତ ବୋଲି କହିବାର କୌଣସି କାରଣ ନାହିଁ ।

କୌଣସି କମ୍ବଦନ୍ତୀ ପ୍ରାୟ ଭିତ୍ତିହୀନ ନୁହେଁ । କିନ୍ତୁ ଜଣେ ଯାହା କରିଥାଏ, କିମ୍ବା ଜଣକ ନାମରେ ଯାହା ଶୁଣାଯାଇଥାଏ, କାଳକ୍ରମେ କମ୍ବଦନ୍ତୀ ତାହା ଅନ୍ୟ ନାମରେ ଯୋଡ଼ିଦିଏ । ଉଲ୍ଲିଖିତ ଆଲୋଚନାରେ ଦେଖା ଯାଉଛି ଯେ ଗଙ୍ଗଙ୍ଗଙ୍କ ସାମନ୍ତରାଙ୍କ ସ୍ଥାନାନ୍ତରିତ ହେବାର କାରଣ ହୋଇଥିଲେ ; କିନ୍ତୁ ପରବର୍ତ୍ତୀ କମ୍ବଦନ୍ତୀ ତାହା କଳାପାହାଡ଼ ନାମରେ ଯୋଡି ଦେଇଛି । କୌଶଲ୍ୟାଗଙ୍ଗ କମ୍ବଦନ୍ତୀର କିପରି ଉତ୍ପତ୍ତି ହେଲା ଓ ତାହା ଗଙ୍ଗେଶ୍ବରଙ୍କ ନାମରେ କିପରି ଜଡ଼ିତ ହେଲା, ଏହାର ଆଲୋଚନା ଏଠାରେ ସମ୍ଭବପର ନୁହେ । ବର୍ତ୍ତମାନ କବିବର ରାଧାନାଥଙ୍କ ପାର୍ବତୀ କାବ୍ୟ ସମ୍ବନ୍ଧରେ କେତେକ କଥା କହିବା ସମୀଚୀନ ମନେ ହେଉଛି । ରାଧାନାଥ ପାର୍ବତୀ କାବ୍ୟ ଲେଖି ଜାତୀୟ କଳଙ୍କ ସୃଷ୍ଟି କରିଛନ୍ତି ବୋଲି ତାଙ୍କୁ ଅନେକେ ଦୋଷୀ କରିଛନ୍ତି । କିନ୍ତୁ କବିବରଙ୍କ ପାର୍ବତୀ କାବ୍ୟ କପୋଳ କଳ୍ପିତ ନୁହେ ; ତାହା ମାଦଳାପାଞ୍ଜୀ ଅବଲମ୍ବନରେ ଲିଖିତ । କବିର କଳ୍ପନା ଓ ସ୍ୱାଧୀନତା ସେଥିରେ ରହିଛି, କିନ୍ତୁ ମାଦଳାପାଞ୍ଜୀର ମୂଳନାମ ଓ ଘଟଣାବଳୀକୁ ସେ ଯଥାଯଥ ଅନୁସରଣ କରିଛନ୍ତି । ପାର୍ବତୀ କାବ୍ୟ ସମ୍ପୂର୍ଣ୍ଣ କପୋଳକଳ୍ପିତ ହୋଇଥିଲେ, କବିବରଙ୍କୁ ଦୋଷୀ କରିବାର ଯଥେଷ୍ଟ କାରଣ ଥାଆନ୍ତା । କିନ୍ତୁ ଉତ୍କଳର ବହୁ ଲେଖକ ଓ ଐତିହାସିକ ମାଦଳାପାଞ୍ଜୀକୁ ଜାତୀୟ ଇତିହାସରୂପେ ଗ୍ରହଣ କରି ; ତାକୁ ଅତି ପ୍ରାଚୀନ, ଅତି ମୌଳିକ ଓ ଅଭ୍ରାନ୍ତ

ବୋଲି ପ୍ରମାଣ କରିବା ପାଇଁ ଶତାବ୍ଦୀ ବ୍ୟାପି ଚେଷ୍ଟା କରୁଥିବା ବେଳେ, ସେହି ପାଂଜୀ ଅବଲମ୍ବନରେ ଲିଖିତ ଗୋଟିଏ କାବ୍ୟର କବିଙ୍କୁ ଦୋଷୀ କରିବାରେ କୌଣସି ନ୍ୟାୟ ନାହିଁ ।



# ଚିତ୍ରପରିଚୟ

ଚଣ୍ଡି କ୍ଲଟକ ମଧ୍ୟରୁ ଜାଜପୁର କଟକରେହିଁ ବର୍ତ୍ତମାନ ବେଶୀ ଭାବରେ ପ୍ରତ୍ନତତ୍ତ୍ୱ ସମ୍ପଦ ରହିଛି । ଏ ପୁସ୍ତକରେ ସନ୍ନିବେଶିତ ଚିତ୍ର ସମୂହ ଜାଜପୁର ଓ ତାର ଆଖପାଖ ସ୍ଥାନର ମୂର୍ତ୍ତି ଓ ମନ୍ଦିର-ଇତ୍ୟାଦିର ଚିତ୍ର । ଜାଜପୁର କଟକର ଇତିହାସ ଆଲୋଚନା କଲାବେଳେ କୁହାଯାଇଛି ଯେ ଏଠାରେ ଯେଉଁ ପ୍ରତ୍ନତତ୍ତ୍ୱ ସମ୍ପଦ ଅଛି, ସେଥିରୁ ଖ୍ରୀଷ୍ଟାବ୍ଦ ୫ ମ ଶତାବ୍ଦୀଠାରୁ ଖ୍ରୀଷ୍ଟାବ୍ଦ ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ ଏହାର ଧାରାବାହିକ ଇତିହାସର ସୂଚନା ମିଳେ । ଏହି ଚିତ୍ର ପରିଚୟଦ୍ୱାରା ଏହି ଉକ୍ତି ଅନେକାଂଶରେ ସମର୍ଥିତ ହେବ । ଚିତ୍ରପରିଚୟରେ ପ୍ରାତ୍ନତାତ୍ତ୍ୱିକ ବସ୍ତୁର ନାମ, ତାର ପ୍ରାପ୍ତି ସ୍ଥାନ ଓ ନିର୍ମାଣକାଳର ସୂଚନା ଦିଆଯାଇଛି ।

୧ । ଇନ୍ଦ୍ରାଣୀ । ଏସ୍. ଡ଼ି. ଓ. କମ୍ପାଉଣ୍ଡ, ଜାଜପୁର । ୧୦ ମ ଶତାବ୍ଦୀ ।

୨ । ଚାମୁଣ୍ଡା । ଏସ୍. ଡ଼ି. ଓ. କମ୍ପାଉଣ୍ଡ, ଜାଜପୁର । ୧୦ ମ ଶତାବ୍ଦୀ ।

୩ । ବାରାହୀ । ଏସ୍. ଡ଼ି. ଓ. କମ୍ପାଉଣ୍ଡ, ଜାଜପୁର । ୧୦ ମ ଶତାବ୍ଦୀ ।

୪ । ଗରୁଡ଼ । ଏସ୍. ଡ଼ି. ଓ. କମ୍ପାଉଣ୍ଡ, ଜାଜପୁର । ୧୦ ମ ଶତାବ୍ଦୀ ।

୫ । ବୁଦ୍ଧଦେବ । ବିଦ୍ୟମାନ ବିରଜାମନ୍ଦିର କାନ୍ଥରେ ରକ୍ଷିତ, ଜାଜପୁର । ୭ ମ ଶତାବ୍ଦୀ ।

୬ । ଧ୍ୟାନୀ ବୁଦ୍ଧ । ଏସ୍. ଡ଼ି. ଓ. କମ୍ପାଉଣ୍ଡ, ଜାଜପୁର । ୮ ମ ଶତାବ୍ଦୀ ।

୭ । ଅବଲୋକିତେଶ୍ୱର ପଦ୍ମପାଣି । ରେଭେନସା କଲେଜ ନିକଟ-ବର୍ତ୍ତୀ ଗୋଟିଏ କ୍ଷୁଦ୍ର ମନ୍ଦିରରେ ଏହା ବର୍ତ୍ତମାନ ରକ୍ଷିତ ହୋଇଛି । କଳ୍ପି କଟକର କମିସନର୍ ବମ୍‌ସ୍ ସାହେବ ଏହାକୁ ଲଳିତ ଗିରିରୁ କଟକକୁ ନେଇ ଆସିଥିଲେ । ୮ ମ ଶତାବ୍ଦୀ ।

୮ । ମୈତ୍ରେୟ । ରେଭେନ୍‌ସା କଲେଜ ନିକଟବର୍ତ୍ତୀ ଗୋଟିଏ କ୍ଷୁଦ୍ର ମନ୍ଦିରରେ ଏହା ବର୍ତ୍ତମାନ ରକ୍ଷିତ । କଳ୍ପି କଟକର କମିସନର୍ ବମ୍‌ସ୍ ସାହେବ ଏହାକୁ ଲଳିତଗିରିରୁ କଟକକୁ ନେଇଆସିଥିଲେ । ୮ ମ ଶତାବ୍ଦୀ ।

୯ । ପାର୍ଶ୍ୱନାଥ । ଜାଜପୁର ନିକଟବର୍ତ୍ତୀ ନରସିଂହପୁର ଗ୍ରାମ । ୯ ମ-୧୦ମ ଶତାବ୍ଦୀ ।

୧୦ । ଚନ୍ଦ୍ରନାଥ । ଜାଜପୁର ନିକଟବର୍ତ୍ତୀ ନରସିଂହ ପୁର ଗ୍ରାମ । ୯ ମ-୧୦ ମ ଶତାବ୍ଦୀ ।

୧୧ । ନେମିନାଥ । ଆଖଣ୍ଡଳେଶ୍ୱର ମନ୍ଦିରରେ ରକ୍ଷିତ ଜାଜପୁର । ୯ ମ ଶତାବ୍ଦୀ ।

୧୨ । ଜୁମା ମସଜିଦ୍ । ଜାଜପୁର । ୧୭ ଶ ଶତାବ୍ଦୀ ।

୧୩ । ଶୁଭସ୍ତମ୍ଭ । ଜାଜପୁର । ୧୦ ମ ଶତାବ୍ଦୀ ।

୧୪ । ଅରଣ୍ୟର ଦୃଶ୍ୟ । ଦଶାଶ୍ୱମେଧଘାଟ ପାର୍ଶ୍ୱସ୍ଥ ଗୋଟିଏ ମନ୍ଦିର କାନ୍ଥରେ ରକ୍ଷିତ, ଜାଜପୁର । ୧୦ ମ ଶତାବ୍ଦୀ ?

୧୫ । ଗଜସିଂହ । ଦଶାଶ୍ୱମେଧ ଘାଟ ନିକଟବର୍ତ୍ତୀ ଜଗନ୍ନାଥମନ୍ଦିର, ଜାଜପୁର, । ୧୫ ଶ ଶତାବ୍ଦୀ ।

୧୬ । ବିଷ୍ଣୁ । ବରାହ ମନ୍ଦିର, ଜାଜପୁର । ୧୫ ଶ ଶତାବ୍ଦୀ ।

୧୭ । ଶିବ ଓ ଅନ୍ନପୂର୍ଣ୍ଣା । ବରାହ ମନ୍ଦିର କାନ୍ଥରେ ରକ୍ଷିତ, ଜାଜପୁର । ୭ ମ ଶତାବ୍ଦୀ ।

୧୮ । ଦୁର୍ଗା । ବିରାଜ ମନ୍ଦିର ଗାତ୍ରରେ ରକ୍ଷିତ, ଜାଜପୁର । ୧୦ମ ଶତାବ୍ଦୀ ।

୧୯ । ଦୁର୍ଗା । ବିରାଜ ମନ୍ଦିର ଗାତ୍ରରେ ରକ୍ଷିତ, ଜାଜପୁର ।

୨୦ । ତୀର୍ଥିକ ଗଣ । ଅଖଣ୍ଡଳେଶ୍ୱର ମନ୍ଦିରରେ ରକ୍ଷିତ, ଜାଜପୁର । ୭ମ ଶତାବ୍ଦୀ ।

୨୧ । ଗଣେଶ । ଆଖଣ୍ଡଳେଶ୍ୱର ମନ୍ଦିରରେ ରକ୍ଷିତ, ଜାଜପୁର । ୮ ମ ଶତାବ୍ଦୀ ।

୨୨ । ଗଣେଶାନୀ । ଅଖଣ୍ଡଳେଶ୍ୱର ମନ୍ଦିରରେ ରକ୍ଷିତ, ଜାଜପୁର । ୧୦ମ-୧୧ଶ ଶତାବ୍ଦୀ ।

୨୩ । ପାଞ୍ଚୋଟି "ସହସ୍ର ଲିଙ୍ଗ" । ଅଖଣ୍ଡଳେଶ୍ୱର ମନ୍ଦିରରେ ରକ୍ଷିତ, ଜାଜପୁର । ୬ମ ଶତାବ୍ଦୀ ।

୨୪ । ସୂର୍ଯ୍ୟ । ଅଖଣ୍ଡଳେଶ୍ୱର ମନ୍ଦିରରେ ରକ୍ଷିତ, ଜାଜପୁର । ୯ ମ ଶତାବ୍ଦୀ ।

୨୫ । ବୈତାଳିକ ଗଣ । ବର୍ଦ୍ଧମାନ ବିରଜା ମନ୍ଦିରର କାନ୍ଥରେ ଖଚିତ । ୧୦ମ-୧୨ଶ ଶତାବ୍ଦୀ ।

୨୬ । "କୃଷ୍ଣା ପାର୍ବତୀ" । ବର୍ଦ୍ଧମାନ ବିରଜା ମନ୍ଦିରର କାନ୍ଥରେ ଖଚିତ, ଜାଜପୁର । ୭ ମ ଶତାବ୍ଦୀ ।

୨୭ । ଭୈରବ । ବର୍ଦ୍ଧମାନ ବିରଜା ମନ୍ଦିରର କାନ୍ଥରେ ଖଚିତ, ଜାଜପୁର । ୬ଷ୍ଠ-୭ମ ଶତାବ୍ଦୀ ।

୨୮ । କାର୍ତ୍ତିକେୟ । ବର୍ଦ୍ଧମାନ ବିରଜା ମନ୍ଦିରର କାନ୍ଥରେ ଖଚିତ ୭ ମ ଶତାବ୍ଦୀ ।

୨୯ । ତ୍ରିଲୋଚନେଶ୍ୱର ମନ୍ଦିର, ଜାଜପୁର । ୧୦-୧୧ଶ ଶତାବ୍ଦୀରେ ନିର୍ମିତ, ମାତ୍ର ପରବର୍ତ୍ତୀ ଯୁଗରେ ବହୁ ଭାବରେ ପରିବର୍ତ୍ତିତ ।

୩୦ । ତ୍ରିଲୋଚନେଶ୍ୱର ମନ୍ଦିରର ଅଂଶ ବିଶେଷ, ଜାଜପୁର । ୧୮ ମ-୧୧ଶ ଶତାବ୍ଦୀ ।

୩୧ । ଚାମୁଣ୍ଡା । ସୋମେଶ୍ୱର ମନ୍ଦିର ନିକଟରେ ରକ୍ଷିତ, ଜାଜପୁର । ଏହାର ପଦତଳେ ଯେଉଁ ଶିଳାଲେଖ ଅଛି, ତାର ପାଠ କେତେକ "ଓଁ ଶ୍ରୀ ବତ୍ସା ଦେବ୍ୟାପ୍ୟୈ କାଭ" । ଅଷ୍ଟମ ଶତାବ୍ଦୀ ।

୩୨ । ଝପାସିଂହ । ସିଦ୍ଧେଶ୍ୱର ମହାଦେବଙ୍କ ନିକଟରେ ରକ୍ଷିତ, ଜାଜପୁର । ୦ମ-୧୦ଶ ଶତାବ୍ଦୀ

୩୩ । ଗଙ୍ଗା । ଗୋବର୍ଦ୍ଧନେଶ୍ୱର ମନ୍ଦିର ଗାତ୍ରରେ ଖଚିତ । ଜାଜପୁର ୧୦ ମ-୧୧ଶ ଶତାବ୍ଦୀ ।

୩୪ । ଲୀଳାରବିନ୍ଦ ଧାରିଣୀ ଅଳସ କନ୍ୟା । ବ୍ରହ୍ମକୁଣ୍ଡ ପୁଷ୍କରିଣୀର ସୋପାନରେ ଖଚିତ । ୧୦ ମ ଶତାବ୍ଦୀ ।

୩୫ । ମନ୍ଦାକିନୀ ନଦୀର ଅଠରନଳା ପୋଲର ଗୋଟିଏ ଅରଚ ବା ତୋରଣର ଅଗ୍ରଭାଗ । ଜାଜପୁର, ୧୨ ଶ ଶତାବ୍ଦୀ ।

୩୬ । ମିଥୁନ ଓ ଲତାପୁଷ୍ପମାନ ପୁଚ୍ଛ ସହିତ ମୟୂର । ଅଠର ନଳାରେ ନିଯୋଜିତ । ୭ ମ-୮ ମ ଶତାବ୍ଦୀ ।

୩୭ । ଶିବ ବିବାହ ଯାତ୍ରାର ଅଂଶ ବିଶେଷ, ଅଠର ନଳାରେ ନିଯୋଜିତ । ୬ ଷ୍ଠ ଶତାବ୍ଦୀ ।

୩୮ । ବୃକ୍ଷ ମୂଳରେ ଜଳଦାନରତ ତପସ୍ୱୀ । ଅଠରନଳାରେ ନିଯୋଜିତ । ୬ଷ୍ଠ-୭ମ ଶତାବ୍ଦୀ ।

୩୯ । ମିଥୁନ-ବିଗ୍ରହ । ଗୋବର୍ଦ୍ଧନେଶ୍ୱର ମନ୍ଦିର ଗାତ୍ରରେ ଖଚିତ, ଜାଜପୁର । ୮ମ-୯ମ ଶତାବ୍ଦୀ ।

୪୦ । ବ୍ରହ୍ମା । ଜଟେଶ୍ୱର ମନ୍ଦିର ନିକଟରେ ରକ୍ଷିତ, ଜାଜପୁର, ୧୦ମ-୧୧ଶ ଶତାବ୍ଦୀ ।

# ପରିଶିଷ୍ଟ

୧। ଏହି ପ୍ରବନ୍ଧଟି ଯେତେବେଳେ ଲେଖା ହୋଇଥିଲା, ସେ ପର୍ଯ୍ୟନ୍ତ ସୋମବଂଶୀ ରାଜାମାନଙ୍କ ଯେଉଁ ବଂଶାବଳୀ ମିଳିଥିଲା, ସେହି ବଂଶାବଳୀ ସହିତ ମାଦଳାପାଞ୍ଜୀର କେଶରୀ ବଂଶର କେଉଁ ରାଜାମାନଙ୍କ ନାମ ମେଳ ଖାଉଥାଏ, ତାହା ଏପୁସ୍ତକର ପୃ ୬୭ ଓ ୬୮ ରୁ। ପର୍ଯ୍ୟନ୍ତ ପ୍ରଦର୍ଶିତ ହୋଇଛି। କିନ୍ତୁ ଇତମଧ୍ୟରେ ସୋମବଂଶୀ ରାଜା କର୍ଣ୍ଣଦେବଙ୍କ ରତ୍ନଗିରି ତାମ୍ରଶାସନର ଅବଶିଷ୍ଟ ଅଂଶ ମିଳିଯାଇଛି ଓ ତାହା ପ୍ରକାଶିତ ହୋଇଛି। ଏହି ତାମ୍ର ଶାସନର କର୍ଣ୍ଣଦେବ ଏବଂ ହମଚରିତ ଓ ମାଦଳାପାଞ୍ଜୀର କର୍ଣ୍ଣକେଶରୀ ଯେ ଏକ ଓ ଅଭିନ୍ନ ରାଜା, ଏଥିରେ ସନ୍ଦେହର ଅବକାଶ ନାହିଁ। ରତ୍ନଗିରି ତାମ୍ର ଶାସନରେ ସୋମବଂଶର ସମ୍ପୂର୍ଣ୍ଣ ବଂଶାବଳୀ ରହିଛି। ତାଛଡ଼ା ବ୍ରହ୍ମେଶ୍ୱର ଶିଳାଲେଖରୁ ଉଦ୍ୟୋତଙ୍କ ପୂର୍ବପୁରୁଷମାନଙ୍କ ନାମ ମିଳୁଛି। ଏଣୁ ଏହି ଉଭୟ ଲେଖ ସାହାଯ୍ୟରେ ସୋମବଂଶର ସମସ୍ତ ରାଜାଙ୍କ ନାମ ଓ ପରସ୍ପର ମଧ୍ୟରେ ଥିବା ସେମାନଙ୍କ ସମ୍ବନ୍ଧ ସମ୍ପୂର୍ଣ୍ଣରୂପେ ବର୍ତ୍ତମାନ ଜଣାପଡ଼ୁଛି। ଇତ ମଧ୍ୟରେ ଆଉ ଯେଉଁ ସବୁ ନୂତନ ଐତିହାସିକ ଉପାଦାନ ମିଳିଛି, ସେଥିରୁ ସୋମବଂଶର ଓ ତତ୍‌ପୂର୍ବବର୍ତ୍ତୀ ଭୌମବଂଶର ରାଜତ୍ୱକାଳ ମଧ୍ୟ ନିଃସନ୍ଦେହରେ ସ୍ଥିରୀକୃତ ହୋଇଯାଇଛି। ଲେଖକ ଏହି ସବୁ ଉପାଦାନକୁ ତାର ନବପ୍ରକାଶିତ Chronology of the Bhauma Karas and the Somavamsis of Orissa (Madras Law Journal Press, 1961) ପୁସ୍ତକରେ ବନ୍ଧୁଭାବରେ ଆଲୋଚନା କରିଛି। ଅବଶ୍ୟ ପ୍ରତ୍ୟେକ ରାଜାର ଯେଉଁ ରାଜତ୍ୱ-କାଳ ସ୍ଥିର କରାଯାଇଛି, ସେଥିରେ କେତେକ ବର୍ଷ ଏପଟ ସେପଟ ହୋଇପାରିବାର ସମ୍ଭାବନା ରହୁଛି, କିନ୍ତୁ ଏହା ଉଭୟ ରାଜବଂଶରେ ରାଜତ୍ୱ-କାଳସମ୍ବନ୍ଧୀୟ ଯେଉଁ ଶତ ଶତ ବର୍ଷର ବ୍ୟବଧାନ ସୃଷ୍ଟି

କରାଯାଉଥିଲା, ତାହାହିଁ ପାଇଁ ତାର ଅବସାନ ଘଟିଛି । ଏଠାରେ ଉଲ୍ଲେଖ ଯୋଗ୍ୟ ଯେ ୧୮୨୨ ଖ୍ରୀଷ୍ଟାବ୍ଦରେ ଷ୍ଟାର୍ଲିଂ ସାହେବ ତାଙ୍କ ପୁସ୍ତକ ଲେଖିବା ଦିନଠାରୁ ୧୯୬୧ ପର୍ଯ୍ୟନ୍ତ ବହୁତ ମତାନୁଯାୟୀ କେତେବେଳେ ପଞ୍ଚମ, କେତେବେଳେ ଅଷ୍ଟମ, କେତେବେଳେ ଦଶମ, କେତେବେଳେ ଏକାଦଶ ଓ କେତେବେଳେ ଦ୍ୱାଦଶ ଶତାବ୍ଦୀକୁ ସୋମବଂଶୀ କେଶରୀମାନଙ୍କ ରାଜତ୍ୱ କାଳରୂପେ ନିର୍ଣ୍ଣୟ କରାଯାଇଥିଲା । ଏଣୁ ଏମାନଙ୍କ ଇତିହାସ-ସଙ୍କଳନ ଏକ ପ୍ରକାର ଅସମ୍ଭବ ବ୍ୟାପାରରେ ପରିଣତ ହୋଇଥିଲା । ଉଲ୍ଲିଖିତ ଇଂରାଜୀ-ପୁସ୍ତକର ପୃ ୧୬ଷ୍ଠାରେ ସୋମବଂଶୀମାନଙ୍କ ଯେଉଁ ବଂଶାବଳୀ ତଥା ରାଜତ୍ୱ-କାଳ ଦିଆଯାଇଛି, ତାହା ନିମ୍ନରେ ଉଦ୍ଧୃତ ହେଲା ।



ଉଲ୍ଲିଖିତ ବଂଶାବଳୀରୁ ଦେଖାଯିବ ଯେ ସୋମବଂଶରେ ଯେଉଁ ରାଜାମାନଙ୍କ ନାମ ଅଛି, ମାଦଳାପାଞ୍ଜିର କେଶରୀ ବଂଶରେ ସେହିରାଜାମାନଙ୍କର ନାମମାନ ମଧ୍ୟ ସାମାନ୍ୟ ପରିବର୍ତ୍ତିତ ଆକାରରେ। ଏବଂ ଓଲଟପାଲଟ ଭାବରେ ରହିଛି । ପୁରଞ୍ଜୟ କେଶରୀ ନାମଟି ମଧ୍ୟ କେଶରୀବଂଶ ତାଲିକାରେ ଅଛି ଓ ସେ କୋଣାର୍କର ସୂର୍ଯ୍ୟ ମନ୍ଦିର ନିର୍ମାଣ କରିଥିଲେ ବୋଲି ମାଦଳା-ପାଞ୍ଜୀରେ ବର୍ଣ୍ଣିତ ଅଛି । କୋଣାର୍କର ବର୍ତ୍ତମାନ ସୂର୍ଯ୍ୟମନ୍ଦିର ଲାଙ୍ଗୁଳା ନରସିଂହଦେବ ବା ପ୍ରଥମ ନରସିଂହଦେବଙ୍କ (ରାଜତ୍ୱକାଳ ଖ୍ରୀ: ୧୨୩୮-୧୨୬୪) ଦ୍ୱାରା ନିର୍ମିତ ହୋଇଥିଲା । ତାହା ପୂର୍ବରୁ ସେଠାରେ ଯେଉଁ ମନ୍ଦିର ଥିଲା, ତାହା ପୁରଞ୍ଜୟ ଦେବଙ୍କ ଦ୍ୱାରା ନିର୍ମିତ ହୋଇଥିବା ଅତ୍ୟନ୍ତ ସମ୍ଭବ ।

— ୫✻୫ —



୧ ଇନ୍ଦ୍ରାଣୀ

ଏସ୍. ଡ଼ି. ଓ. କମ୍ପାଉଣ୍ଡ ଜ.ଜପୁର, ୧୦ ମ ଶତାବ୍ଦୀ



୭। ଚାମୁଣ୍ଡା

ଏସ୍. ଡ଼ି. ଓ. କମ୍ପାଉଣ୍ଡ, ଜାଜପୁର, ୧୦ମ ଶତାବ୍ଦୀ




୩ । ବାରାହୀ

ଏସ୍. ଡ଼ି. ଓ. କମ୍ପାଉଣ୍ଡ, ଜାଜପୁର, ୧୦ ମ ଶତାବ୍ଦୀ



୫ । ବୁଦ୍ଧଦେବ
ବିରଜାମନ୍ଦିର, ଜାଜପୁର, ୭ମ ଶତାବ୍ଦୀ



୭ । ଧ୍ୟାନୀବୁଦ୍ଧ
ଏସ୍. ଡ଼. ଓ. କମ୍ପାଉଣ୍ଡ, ଜାଜପୁର, ୮ମ ଶତାବ୍ଦୀ



୮ । ମୈତ୍ରେୟ

କଟକ ୮ମ ଶତାବ୍ଦୀ



୯ । ପାର୍ଶ୍ୱନାଥ

ଜାଜପୁର ନିକଟବର୍ତ୍ତୀ ନରସିଂହପୁର ଗ୍ରାମ, ୯ମ ଶତାବ୍ଦୀ



୧୦ । ଚନ୍ଦ୍ରନାଥ

ଜାଜପୁର ନିକଟବର୍ତ୍ତୀ ନରସିଂହପୁର ଗ୍ରାମ, ୯-୧୦ମ ଶତାବ୍ଦୀ



୧୧ । ନେମିନାଥ

ଆଖଣ୍ଡଳେଶ୍ୱର ମନ୍ଦିର, ଜାଜପୁର, ୯ମ ଶତାବ୍ଦୀ



୧୨ । ଜୁମା ମସଜିଦ୍‌
ଜାଜପୁର, ୧୭ଶ ଶତାବ୍ଦୀ



୧୩। ଶୁଭସ୍ତମ୍ଭ
ଜାଜପୁର,. ୧ମ ଶତାବ୍ଦୀ



୧୪ । ଅରଣ୍ୟର ଦୃଶ୍ୟ

ଦଶାଶ୍ୱମେଧଘାଟ ନକଟବର୍ତ୍ତୀ ମନ୍ଦିର, ଜାଜପୁର, ୧୦ମ ଶତାବ୍ଦୀ



୧୫ । ଗଜସିଂହ

ଜଗନ୍ନାଥ ମନ୍ଦିର, ଜଜପୁର, ୧୮—୧୯ଶ ଶତାବ୍ଦୀ



୧୭ । ବିଷ୍ଣୁ

ନବଗ୍ରହମଢର, ଜାଜପୁର,  ୧୫ଶ ଶତାବ୍ଦୀ



୨୦। ତୀର୍ଥ ଙ୍କଗଣ

ଅଖଣ୍ଡଳେଶ୍ୱର ମନ୍ଦିର, ଜାଜପୁର, ୭ମ ଶତାବ୍ଦୀ



୨୩ । ପାଞ୍ଚୋଟି ସହସ୍ରଲିଙ୍ଗ
ଅଙ୍ଗ୍ରଲେଶ୍ୱର ମନ୍ଦିର, କଜପୁର ମ ମି ଭୋଡା



୨୭। ଭୈରବ

ବରଜାନଗର, ଜାଜପୁର, [illegible] ଶତାବ୍ଦୀ



୨୯ । ଭିଲ୍ଲେତନେଶ୍ୱର ମନ୍ଦିର

ଆନୁ ଖ୍ରୀ, ୧୦ମ-୧୧ଶ ଶତାବ୍ଦୀ



୩୭। ଝପାସିଂହ
ସଟ୍ଟେଶ୍ୱର ମନ୍ଦିର ନିକଟ, ଜାଜପୁର, ୧୦ମ ୧୧ଶ ଶତାବ୍ଦୀ



୩୬। ମହାବିନୀ ନଦୀରୁ ଅଠରନଳା ପୋଲର ଗୋଟିଏ ଅଂଶର ଦୃଶ୍ୟ
ଜାଙ୍ଗୁର, '୭୫ ଫୋଟୋ



୩୭ ମିଥୁନ ଓ ଲତାୟମାନ ବୃକ୍ଷ ସହିତ ମୟୂର
[illegible] ଦେଉଳ, ଜାଜପୁର, ୭ମ-୮ମ ଶତାବ୍ଦୀ



୩୭ । ଶିବ-ବିବାହ-ଯାତ୍ରାର ଅଂଶବିଶେଷ
ଝଠନେଳା ପୋଲ, ଜାଜପୁର, ୬ଷ୍ଠ-୭ମ ଶତାବ୍ଦୀ



୩୮ । ବୃକ୍ଷମୂଳରେ ଜଳଦାନରତ ତପସ୍ୱୀ

